ମୁଦ୍ରାକର :

ଶ୍ରୀ ହାଡ଼ୁ ସାହୁଗୁରୁ
ଓଡ଼ିଶା ପ୍ରିଣ୍ଟିଂ ଓ୍ୱାର୍କସ୍
ବ୍ରହ୍ମପୁର

*

ପ୍ରଭାତ ପ୍ରକାଶିନୀ
ଅଷ୍ଟାଦଶ ଅବଦାନ

*

ଲେଖକ ଓ ପ୍ରକାଶକ :

ରାଜା ଜଗନ୍ନାଥ ଦେବ ବର୍ମା
ନାଦ ନିଳୟ, ଜୟମଂଗଳ ରାଜବାଟୀ
ଟିକିଲି

*

ପ୍ରାପ୍ତିସ୍ଥାନ :

ଦାସ ବ୍ରଦର୍ସ
ବ୍ରହ୍ମପୁର, କଟକ
ଓ
ବ୍ରହ୍ମପୁର, କଟକର ଅନ୍ୟାନ୍ୟ ପୁସ୍ତକ ଦୋକାନ

*

ପ୍ରଥମ ସଂସ୍କରଣ—୧୦୦୦
୧୯୬୭

*

ମୂଲ୍ୟ—ଦୁଇଶହ ପଇସା

*Dedicated*
*to*

*Dewan Bahadur*
*Late Shri Kommireddy*
*Suryanarayanamurty of Kakinada,*
*Andhra Pradesh.*

ମତେ ଯେଉଁ ସମୟରେ ବାଂଶ ବର୍ଷ ଆପଣଙ୍କୁ ସେତେବେଳେ ଠିକ୍ ଅଶି ।

ଏହା ଆଜକୁ କୋଡ଼ିଏ ବର୍ଷ ତଳର କଥା—

ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱ ଧରି ଆଂଧ୍ର ମରୁଭୂମିରେ ଆପଣ କୋକନାଡ଼ା 'ସରସ୍ୱତୀ ଗାନ ସଭା'ର ସଭାପତି ରୂପେ ସଂଗୀତର ଝରଝଂକୃତ ପ୍ରସ୍ରବଣ ଝରାଇ ଆସିଚନ୍ତି । ଏହା ମୁକ୍ତ କଂଠରେ ସମସ୍ତେ ସ୍ୱୀକାର କରନ୍ତି । ଆଂଧ୍ରଙ୍କ ନିକଟରେ ଆପଣ ଚିର ଅବିସ୍ମରଣୀୟ, ନମସ୍ୟ ଓ ବଂଦନୀୟ ହି ହୋଇପାରି ।

କିନ୍ତୁ—

ଆପଣଂକର ଆଂତରିକ ଶୁଭ କାମନା ଫଳରେ ମୋର ଏ ସଂଗୀତ ସାଧନା ଫଳବତୀ ହୋଇଚି ଏବଂ ମୋ ଭଳି ଏକ ଅଣଆଂଧ୍ରକୁ ଆପଣଙ୍କର ଏ ପ୍ରଗତିଶୀଳ ଆଂଧ୍ର ସମାଜ ସମାଦୃତ କରି ଯଥାସ୍ଥାନ ଦେବାରେ ଦ୍ୱିଧା ମନେ କରନ୍ତି ନାହିଁ ।

ଆପଣ ଏ ଜଗତରେ ଆଉ ନାହାନ୍ତି । କିନ୍ତୁ—

ଏହା ଆପଣଙ୍କର କୃତି ଓ ଏକ ଅଧୌତ ସ୍ମୃତି ।

ଆପଣଙ୍କର ଶୁଭେଚ୍ଛାରେ ଆଂଧ୍ରଦେଶରେ ସଂଗୀତର ବହୁଳ ପ୍ରସାର ହେଉ—ଏଇ ଶୁଭକାମନାରେ 'ଊଷାର ନିଷାଦ' ପୁସ୍ତିକାଟି ଉତ୍ସର୍ଗ କଲି ।

ବ୍ରହ୍ମପୁର,
୧୫-୮-୧୯୬୭ ଜଗଦେବ

ଲେଖକ—ରାଜା ଜଗନ୍ନାଥ ଦେବ ବର୍ମା

| | | |
|---|---|---|
| ୧ । | ଜନ୍ମଶାଳ | ୧୯୨୭ |
| ୨ । | ଜନ୍ମସ୍ଥାନ | ଟିକାଲି |
| ୩ । | କବିଜୀବନ | ତେର ବର୍ଷ ବୟସରେ |
| ୪ । | ସଂଗୀତ ପରିଚର୍ଯ୍ୟା | ଚଉଦ ବର୍ଷ ବୟସରେ |
| ୫ । | ମାଂଦ୍ରାଜ ବେତାର | ୧୯୪୪ |
| ୬ । | ପରିଣୟ | ୧୯୪୫ |
| ୭ । | ବିଜୟ ବାଡ୍ଡା ବେତାର | ୧୯୪୮ |
| ୮ । | ପତ୍ନୀ ବିୟୋଗ | ୧୯୪୮ |
| ୯ । | କଟକ ବେତାର | ୧୯୫୦ |
| ୧୦ । | ପ୍ରେସିଡ଼େଂଟ୍, ଲଳିତକଳା ସମିତି, ଶ୍ରୀକାକୋଲ | ୧୯୫୨ ଓ ୫୩ |
| ୧୧ । | ବିଜୟନଗରର ସଂଗୀତ କଲେଜ ପ୍ରଧାନ ଅଧ୍ୟକ୍ଷ ରୂପେ ଆଂଧ୍ର ସରକାରଂକ ଆହ୍ୱାନ | ତିରସ୍କାର |

୧୨ । ସାହିତ୍ୟ ଓ ସଂଗୀତ ଦୁଇ ସପତ୍ନୀଂକ ମଧ୍ୟରେ ସ୍ୱାଭାବିକ ସଂତ୍ରଣା ପାଇଚଂତି । ଉଭୟଂକ ନିକଟରୁ ଅଭିମାନ ପାଇ କବିଂକ ଜୀବନ ଉଭୟଂକ ପ୍ରୀତି-କଷଟିରେ ଉପାଶିତ ହୋଇଚି। ସଂଗୀତ ଠାରୁ ସ୍ନେହର ଭଉଣୀ କବିତାକୁ ସେ ବିଶେଷ ଭଲ ପାଆଂତି । ତେଣୁ କବିଂକ କବିତାଗୁଡ଼ିକ ଛଂଦୋବଦ୍ଧ, ପ୍ରାକୃତିକ ଅନୁରୂପ, ଅନୁପମ ଓ ସମଧିକ ଉପଦଂତ ।

| | | |
|---|---|---|
| ୧୩ । | କାବ୍ୟ-କବିତା | ସପନଚଇଁ, ସ୍ମୃତି, ନାଦଶ୍ରୀ, ଭଗ୍ନବେହଲା···ପ୍ରଧାନ । |
| ୧୪ । | ଗଳ୍ପ-ଉପନ୍ୟାସ | ଉତ୍କଳିକା, ମାଳୋପୂଳ, ଛଡ ଯାଇଛି ହାଜ, ଧୂସର, ବନ୍ୟାର ଦୁଇଟି ଫୁଲ···ପ୍ରଧାନ । |
| ୧୫ । | ପ୍ରକାଶୋନ୍ମୁଖୀ | ବିପ୍ଳବୀ ଗୋପବନ୍ଧୁ, ଶିଳାପ୍ରସ୍ତର···ଇତ୍ୟାଦି । |
| ୧୬ । | ଅନୁବାଦ | ଋତୁସଂହାର |

# ଭୂମିକା

ଆଜକୁ ପ୍ରାୟ ଆଠବର୍ଷରୁ ଊର୍ଦ୍ଧ୍ୱ ହୋଇଯିବଣି 'କାବ୍ୟ-କୁବଳୟ', 'ନବେଦ୍ଧତା' ଓ 'ଲୋହିତ ଗୁଂଠନ' ତିନୋଟି ପୁସ୍ତକ ମୁଦ୍ରଣ ହୋଇ ମୁଦ୍ରଣାଳୟରେ ପଡ଼ିରହିଲା । ପ୍ରତ୍ୟେକଟିକୁ ସ୍ୱତଂତ୍ର ଭାବେ ପ୍ରକାଶ କରିବାର ଅଭିଳାଷ ଥାଇ ସେଥିର ଚିତ୍ରମାନ ସୁସଜ୍ଜିତ ଥିଲେ ସୁଦ୍ଧା ବିଶେଷ ଅସୁବିଧାର ସମ୍ମୁଖୀନ ହୋଇ ତାହା ଆଉ ହୋଇ ପାରିଲା ନାହିଁ ।

ବାରଂବାର ଶାରୀରିକ ଅସ୍ୱାସ୍ଥ୍ୟ, ସେଥି ସଂଗେ ପାରିବାରିକ ଜଂଜାଳ, ମୋ ସଂଗେ ମୋ ପିଲାଂକ ଦେହ ଖରାପ, ଆମ ପରିବାରର ସ୍ୱଚ୍ଛଳତା ସମୟରେ ମୁଦ୍ରାକର ମହୋଦୟଂକ ଅସ୍ୱାସ୍ଥ୍ୟ—ଏ ସମସ୍ତ ବାଧା-ବିଘ୍ନ ଓ ଦୁଃଖ-ଦୁର୍ବିପାକରେ ପୁସ୍ତକ ପ୍ରକାଶ ବଂଦ ରହିଲା । ସେଇ ଫଳରେ ଲେଖମା ଛୁଡ଼ିବାକୁ ବାଧ ହେଲି ଓ ସକୁଟୁଂବେ ଗାଁ ଛାଡ଼ିଲି ।

ଉତ୍ତର ପ୍ରଦେଶର ବାରାଣସୀ ଧାମରେ ତିନୋଟି ଦିନ ବିତିଲା । ମିର୍ଜାପୁର ସେଠାରୁ ବେଶି ଦୂର ନୁହେଁ । ଏହା ଏକ ବୃହତ୍ତମ ସହର । ଏଠାରେ ପ୍ରାୟ ଏକ ସପ୍ତାହରୁ ଊର୍ଦ୍ଧ୍ୱ କାଳ ଅବସ୍ଥାନ କରିବାକୁ ପଡ଼ିଥିଲା । ସହରର ପାଦଦେଶକୁ ସ୍ପର୍ଶକରି ପୂତସଲିଳା ଗଂଗାର ପ୍ଲାବନ । ଗ୍ରୀଷ୍ମାଂତେ ପ୍ରାବୃଟ ସମୟ ପ୍ରାୟ ଉପଗତ ଥିଲା । ପ୍ରାକୃତିକ ସୌଂଦର୍ଯ୍ୟର ଏ ବିପୁଳ ବୈଶିଷ୍ଟ୍ୟ ଉପଭୋଗ କରିବା ସଂଗେ ମୋର ଚଂଚାଡ଼ାଳ କାବ୍ୟ-ଭୂମି ଆଡ଼କୁ ଟଳି ପଡ଼ୁଥାଏ, କିଂତୁ ନିରୁତ୍ସାହରେ ଦିନ ଅତିବାହିତ କରିବାକୁ ପଡ଼ୁଥିଲା ।

ଅନତିଦୂରରେ ମହାକବି କାଳିଦାସ ବର୍ଣ୍ଣିତ ବିଂଧ୍ୟ ଶୈଳମାଳା,—କୃଷ୍ଣ ଚିକୁରକୁ ମେଲିଦେଇ ଶୋଭା ବିସ୍ତାର କରି ଥାଏ ।

ଵିଭୂଷିତା ନ୍ୟୁଦ୍‌ଗତ ପଲ୍ଲବ ଦ୍ରୁମୈଃ ।

ତୃଣୋତ୍କରୈ ରୁଦ୍‌ଗତ କୋମଳାଂକୁରୈ-
ର୍ବିଚିତ୍ର ନୀଳୈର୍ହରିଣୀମୁଖକ୍ଷତୈଃ,
ବନାନି ବୈଂଧ୍ୟାନି ହରନ୍ତି ମାନସଂ
ବିଭୂଷିତା ନ୍ୟୁଦ୍‌ଗତ ପଲ୍ଲବ ଦ୍ରୁମୈଃ ।
—ଋତୁସଂହାର

ଓଡ଼ିଶାର ଗିରିରାଜ ମହେଂନ୍ଦ୍ର ଓ ସେଥିର ପୌରାଣିକ ଭୀମ ଦେଉଳ ଓ ଦ୍ରୌପଦୀ ଦେଉଳ ସଂଗେ ବିଂଧ୍ୟାଚଳର ବିଂଧ୍ୟବାସିନୀ ଓ ଅଷ୍ଟଭୁଜା ମୋ ଚିତ୍ତ-ମୁକୁରରେ ଏକ ପବିତ୍ର-ସ୍ମୃତିକୁ ଆଲୋଡ଼ନ କଲା । ପ୍ରାକୃତିକ ସୁଶ୍ୟାମଳ ବନବୀଥି, ନଭସ୍ପୃଂଶୀ ମହା ଦ୍ରୁମମାଳା, ସୁଶୀତଳ ଲତାକୁଂଜ, ପଥପାର୍ଶ୍ୱ ସୁଶୋଭିତ ମନୋହର କ୍ଷୁଦ୍ର ଗୁଳ୍ମପୁଂଜ ବାସ୍ତବିକ କେଉଁ ଲେଖକକୁ ଅବା ଅଜଣା ସ୍ୱପ୍ନପୁରକୁ ଟାଣି ନନେବ ? ଓଡ଼ିଶା ପରି ଏକ ଅକବି ଦେଶର ପର୍ଯ୍ୟଟକକୁ କାଳିଦାସ ବର୍ଣ୍ଣିତ ଏ ପୁଣ୍ୟଭୂମି ବାଧ୍ୟ ହୋଇ କାବ୍ୟିକ ଚିଂତା-ଧାରାରେ ଉତପ୍ଲୁତ ତଥା ଅନୁପ୍ରାଣିତ ହେବା ପାଇଁ ଉତ୍ତେଜନା ଦେଉଥିଲା । କିଏ କହିପାରିବ ଦିନେ ହୁଏତ ମହାକବିଂକ ପାଦଧୂଳି ଏ ବିଂଧ୍ୟାଚଳକୁ କାବ୍ୟମୟ କରି ତୋଳି ଧରିଥିବ ଏବଂ ବନ୍ୟ ପଶୁପକ୍ଷୀକୁଳ ସେଇ କାବ୍ୟ ଝରଣାରେ ଅବଗାହନ କରିଥିବେ ।

କବିଂକଠାରେ ମୋର ଅର୍ଘ୍ୟ ସଂଭାର ବିଳିବିତରି ଓ ବିନମିତ ହୋଇ ଉଠିଲା । ସେଇ ସୁମଧୁର ସ୍ମୃତିର ବିନିମୟରେ ସେଠାରୁ ଫେରି ଋତୁସଂହାର କାବ୍ୟ ଅନୁବାଦ କଲି । ବାଂକେଇ

ହୋଇ ଯାଇଥିବା କାବ୍ୟ-ନିର୍ଝରର ଗତି ପୁଣି ସଳଖେଇ ଗଲା । କିନ୍ତୁ ଅପ୍ରକାଶିତ ତିନୋଟି କବିତା ବହିକୁ ପ୍ରକାଶ କରିବା ପାଇଁ କେଉଁଠୁ ଅନୁପ୍ରେରଣା ପାଇଲି ନାହିଁ । ଯେଉଁ ଦେଶରେ କବି କହିଲେ ଲୋକେ ନାକ ଟେକନ୍ତି ଓ କବିର ଜୀବନ ଊଷର ମରୁରାଜ୍ୟରେ ମରି ମରି ଲୀନ ହୋଇଯାଏ, ସେ ଦେଶରେ ମୋଭଳି ଏକ ଅକବିର ସ୍ଥାନ ବା ରହିବ କେଉଁଠି ?

ଏକ ସ୍ନିଗ୍ଧ ଭ୍ରମଣର ଶେଷ ସ୍ମୃତି ସଦୃଶ ଯାହାହେଉ ତିନୋଟି ପୁସ୍ତକକୁ ଏକତ୍ର ସଂଚୟନ କରି 'ଉଷାର ନିଷାଦ' ପ୍ରକାଶ ପାଇଲା । ସପ୍ତସ୍ୱର ମଧ୍ୟରେ ନିଷାଦ ଶେଷ ସ୍ୱର । ଏହା କ୍ରୌଂଚ ବିଳାପର ନମୁନା । ସ୍ୱରଟି ସ୍ୱତଃ ଚିତ୍ତତଂତ୍ରୀକୁ ବିଶେଷ ଆଲୋଡ଼ନ କରେ । ଏ ସ୍ୱରର ସ୍ୱୟଂଭୂ ପ୍ରାତଃକାଳର ସୂର୍ଯ୍ୟ ସଂଗେ ଏକ ଅପରିହାର୍ଯ୍ୟ ଅନୁବଂଧ ଥିବା ଯୋଗୁଁ ମୁଁ ଏ ବହିଟାକୁ 'ଉଷାର ନିଷାଦ' ବୋଲି ଆଖ୍ୟା ଦେଇଛି ।

ସନ୍ନିବେଶିତ କବିତାଗୁଡ଼ିକ ଉପରେ ମୁଁ ଟୀକା ଦେବା ପରିବର୍ତ୍ତେ ସେମାନେ ହିଁ ମୋର ଅଭିବ୍ୟକ୍ତିକୁ ବ୍ୟକ୍ତ କରିବେ । ଯେଉଁ କବିର କବିତାମାନ କବିର ସଂବେଦନ ଜଣାଇବାପାଇଁ ଅସମର୍ଥ, ସେଇ କବିତାଗୁଡ଼ିକର ବ୍ୟାଖ୍ୟା ଦେବାକୁ ମୁଁ ପ୍ରସ୍ତୁତ ନୁହେ । ଯାହା ବାସ୍ତବ, ଯାହା ଜନତାର ନିଷ୍କପଟ ଜୀବନକୁ ବଖାଣି ପାରିବ, ଉଦାସୀନକୁ କ୍ୱଚିତ୍ ଉତ୍ତେଜନା ଦେଇ ପାରିବ, ସେଗୁଡ଼ିକ ହିଁ ଏଥିରେ ସ୍ଥାନ ନେଇଚନ୍ତି । ଏଥିରେ କବିର ସଂକଳନ ପାଠବତା କୌଣସି ନାହିଁ ।

'ନିବେଦିତା' ଶୀର୍ଷକ ଏଥିର କ୍ଷୁଦ୍ର କାବ୍ୟଟି ଅନେକ ଦିନ ତଳର ରଚନା  କାଳର ସମୀର ବାଜି ଏଥିର ଝିଲି ମଳିନ

।

ହୋଇ ଯାଇ ଥାଇପାରେ; କିଂତୁ ପିତା ନିକଟରେ ସମସ୍ତ ସଂତାନ ସମାନ ।

ଯାହାହେଉ ବହୁ ବନ୍ଧୁରତାର ଦୁର୍ଗମ ପଥ ଦେଇ 'ଉଷାର ନିଷାଦ' ପୁସ୍ତକଟି ପ୍ରକାଶ ପାଇଲା । ସେଥିରେ ଲେଖକ ନିଜେ ସଂତୁଷ୍ଟ ହେବା ଛଡ଼ା ଅନ୍ୟ ଉପାୟ ନାହିଁ । ପୁସ୍ତକଟି ପାଠକ ସମାଜରେ ସ୍ୱୟଂଭୂ ହୋଇ ପାରିଲେ ନିଜକୁ କୃତାର୍ଥ ମନେକରିବ । ଇତି ।

ବ୍ରହ୍ମପୁର,
୨୦-୮-୧୯୬୭

ଜଗଦେବ



# ସୂଚୀ

୩ । ଲୋହିତଗୁଣ୍ଠନ





ଜଗନ୍ନାଥ ଦେବ ବର୍ମା ପ୍ରକୃତି ଓ ପ୍ରକୃତ କବି । ତେଣୁ ସେ ଲେଖିପାରିଚନ୍ତି—ମାଟିର ଜାହ୍ନବୀ । କବି ସେ, ଭାବୁକ ସେ । ତେଣୁ ଦୁଃଖୀର ଦୁଃଖ, ଅଭାବ ନିଜ ବୁକୁରେ ଥାପିଚନ୍ତି ।

ଜଗନ୍ନାଥ ଦେବ ତାଙ୍କ କବିତାମାନଙ୍କରେ ଅଜଣା ରାଇଜରୁ ଶବ୍ଦ ଟାଣିଆଣନ୍ତି । ନୋହିଲେ କି "ସୂକ୍ଷ୍ମ ବାରି ପ୍ରୋଥି" ବ୍ୟବହାର କରିଥାନ୍ତେ ? ଏହିପରି ଆହୁରି ଅନେକ ଅଛି ।

ଜଣା ସହିତରେ ଅଜଣାର ଭେଟ କରାଇବା ହିଁ ଦେବ ବର୍ମାଙ୍କ ଲେଖାରେ ବାହାବୂରୀ । ବାସ୍ତବିକ୍ ଅଜଣାକୁ ଜଣାଇବା ହିଁ କବିର ଲକ୍ଷ୍ୟ । ସେହିପରି "ଉଦଞ୍ଚିତ ଅଙ୍କୁର ପରଶେ", "ବିଶ୍ୱଚିତ୍ତ ଗୃହକ ନଟନ" ।

ଜଗନ୍ନାଥ ଦେବ ବର୍ମା ଯେପରି ସୌନ୍ଦର୍ଯ୍ୟପାୟୀ ସେହିପରି ସତ୍ୟାଶ୍ରୟୀ । ତେଣୁ ସେ 'ଗାନ୍ଧୀ', 'ପତାକା ବନ୍ଦନା', ଶମ୍ଭୁଦଙ୍କ ଜୀବନ ଇତ୍ୟାଦି ସୁନ୍ଦରଭାବେ ଆଙ୍କି ଯାଇଚନ୍ତି । ତାଙ୍କର ଲେଖାରେ ମୋର ଗୋଟିଏ ଇଂରାଜୀ କବିତାର ଦୁଇଧାଡ଼ିରେ ଯାହା ପ୍ରକାଶ କରିଥିଲି ତାହା ଠିକ୍ ମିଳୁଚି—

*Man and Nature*
*The trees and myself*
*Are inter-turned.*

କବିତାଗୁଡ଼ିକୁ ଯେ ପଢ଼ିଚି ସେ ମୁଗ୍ଧ ହୋଇଥିବ—ମୁଁ ହୋଇଚି । କି କଥା ଇଚ୍ଛେ ?—ଏହି ଦେଖନ୍ତୁ, କବିଙ୍କର ଆଶା, ଆୟାସ—

"ବନ୍ଧୁ ଗୋ ତୁମେ ଶେଷ କରି ଯେବେ
କର୍ପୂର ଜଳେ ସ୍ନାନ,
ପ୍ରସାଧନ ପାଇଁ ଫେରିଲ କକ୍ଷେ
ବସନେ ଫୁଟାଇ ଗାନ,—
ଚୂର୍ଣ୍ଣିତକୁର ଗନ୍ଧମାଧୁରୀ
ପ୍ରସରି ମଳୟାନଳେ,
ଏ ମମ କୁଞ୍ଜେ ପୀରିତଗୁଚ୍ଛ
ପୁଷ୍ପାଇଲ ଗୋ ଠୂଳେ ।"

ଅଦ୍ଭୁତ ପଦପ୍ରୟୋଗ ।

କବି ସ୍ୱତଃ ଯଶସ୍ୱୀ ସଂଗୀତଜ୍ଞ । ବେହେଲାରେ ସେ ଅପୂର୍ବ ମାଧୁରୀ ସୃଷ୍ଟି କରନ୍ତି । ତେଣୁ ତାଙ୍କର କବିତା ଛନ୍ଦୋମୟ ଓ ଛନ୍ଦୋବଦ୍ଧ—ସୂକ୍ଷ୍ମ କଣିକଣିର ମୂର୍ଚ୍ଛନା ମଧ୍ୟ ତାଙ୍କ କବିତାରୁ ମିଳେ ।

ଅପ୍ରାପ୍ତକୁ ପ୍ରାପ୍ତ ହେବା କବିର ଚିର ଆକାଙ୍କ୍ଷା । ସେହି ଚିର ଆକାଙ୍କ୍ଷାର ପରିତୃପ୍ତି ହିଁ କବିତା । ତାହା ଶରୀର ମନକୁ ଛୁଇଁ ଛୁଇଁ ଯାଏ, ଅଥଚ ଧରି ହୁଏ ନାହିଁ—ଅବା ଅଧା ଧରିଦେଇ ଅଧା ହୁଏ ନାହିଁ—ଏହା ହିଁ କବିତାର ଲକ୍ଷଣ ।

ଜଗନ୍ନାଥ ଦେବ ଏଥିରେ କୁଶଳୀ । ଏ ବିଂଶ ଶତାବ୍ଦୀର ପିଚ୍ଛିଲ ପାଦଚ୍ଛରେ ଠିଆ ରହି ସେ ରାଜକବି ହୋଇପାରିଚନ୍ତି । ତାଙ୍କର ଏହି "କାବ୍ୟ-କୁବଳୟ" ସଞ୍ଚୟନଟି ଆମ ଅନ୍ତରରେ ଗୁଂଥା ହୋଇ ରହିବ । ଦେଶ ପ୍ରତି, ନର ପ୍ରତି, ନାରୀ ପ୍ରତି, ପ୍ରକୃତି ପ୍ରତି ସବୁ ସୁନ୍ଦର ଓ ସାବଲୀଳ ଭାବରେ ଏଥିରେ ବର୍ଣ୍ଣିତ

ହୋଇଛି । ନବ ଜଗତରେ 'କାବ୍ୟ-କୁବଳୟ'ଟି ଗୋଟିଏ ନବ ଅବଦାନ ।

ଇଂରାଜୀ କବି କୀଟସ୍‌ଙ୍କ ପ୍ରଣୟିନୀ 'ବ୍ରମା' କବିତାଟି ଏକ ମର୍ମର ପ୍ରସ୍ତରରେ ଖୋଦିତ ଛବି ପରି ମନେ ହୁଏ ।

ହେ କବି ! ତୁମରି ଭାଷାରେ ତୁମକୁ ଅଭିନନ୍ଦନ କରି ଏହି ଲେଖାଟି ସାଙ୍ଗ କଲି—

"କହୁ ସଖି ! ଭୁଲିଯାଏ କ୍ଷଣେ କ୍ଷଣେ
ରୂପ ରସେ ରଚି ଛବି,
ବିଷାଦର ନିବିଡ଼ିତ ଆଲିଙ୍ଗନେ
ଲଭେ ସାନ୍ନିଧ ତୋ କବି ।"

ଭୁବନେଶ୍ୱର,
୩୦-୧୨-୧୯୭୦

ଲକ୍ଷ୍ମୀନାରାୟଣ ସାହୁ

## କବର ସ୍ୱାଗତ

ନିଶି ତ ଯାଇଛି ପାହି
ବିହଗର ଆଦ୍ୟ କଣ୍ଠ ଗୀତରେ;
ଖୋଲ ସଖି ରୁଦ୍ଧ ବାତାୟନ
ଅଙ୍ଗୁଳିର ପାଟଳିତ ଘାତରେ;

ଜୀବନର ପଦ୍ମ ପରିମଳ
ଭରିଆସୁ ଶଯ୍ୟାପରେ ଦଳ;

ପ୍ରଭାତର ରଶ୍ମି ପଡ଼ୁ ଝରି
ମୁଗ୍‌ଧ ତୁମ ପ୍ରଣମିତ ଶିରେ
ସୃଜନର ଛନ୍ଦୋମୟ ଗିରେ ।

କହ୍ଲାର ଦଗ୍‌ଧ ଦେବଦାରୁ
ନଦାଘର ଅନଳ ନର୍ବାଣେ;
ନଦୀ ତଟେ ମୂର୍ଚ୍ଛାଗତ ମୃଗ
ଚମକନ୍ତି ସଲିଳ ଘ୍ରାଣେ;

ବନ-ଗିରି ଜୀର୍ଣ୍ଣ-ରାଜପଥ
ଚହଲ୍‌ଏ ସୂକ୍ଷ୍ମ ବାରି-ସ୍ରୋତ,

ଉଦଞ୍ଚିତ ଅଙ୍କୁର ପରଶେ
ଧରଣୀର ଲୋମକୂପ ଠାଣେ
ସଖି ଆଜ ଅଭିଷେକ ପ୍ରାଣେ ।

ଶୀର୍ଣ୍ଣ କ୍ଷୀଣ ଶୈବଳନୀ-ସ୍ରୋତେ
ନାହିଁ ଆଉ କୁଟିଳ ଦର୍ଶନ;
ମଲ୍ଲିକା-ରାଜଡାଳେ ନାହିଁ
ଲାଳସାର ନର୍ମମ ପୀଡ଼ନ;

ନାଗୀ ନଗ୍ନ-ମାର୍ଗେ ନାହିଁ ଆଉ
ନଦାଘର ଅଗ୍ନିଗର୍ଭ ଦାଉ;

ଜଳଭକ୍ତ-କଣ୍ଠେ ଉଠେ ଆଜ
ବିଜୟ-ଶ୍ରୀ ଜାଗୃତ ଗାୟନ—
ବର୍ଷାରତୁ - ସ୍ତବକ - ନର୍ତ୍ତନ ।

ଶୁଭ୍ର ଦଶେ ଦିଗନ୍ତ-ମୁକୁରେ
ଜୀବନର ଲପନ - ଭାସ୍କର;
ସଖି ମୋର ଏଇ ଲଗନରେ
ପ୍ରଭାତର ଅରୁଣକୁ ଧର;

ହାତେ ଥିବା ନୀରବ ମୁରଳୀ
ଓଠେ ଦେଇ ଫୁଙ୍କ ଦେଲ ଛଇଳ !

ପୃଷ୍ଠା ପରେ ବାଣ୍ଟିଦିଅ ନବ
ପୀରତିର ହେମିଲ ଶୀକର—
ସିକ୍ତ ଫୁଲେ ଦିଅ ଗୋ ସ୍ୱାକ୍ଷର ।

ନଶି ବର୍ଷା ନୀରେ ଅବଗାହି
ତରୁଡାଳେ ଫୁଲ୍ଲ ବିହଗିନୀ,
ତପନର ସଲ୍ଲଜ ମୟୂଖେ
ମେଲଇଛି ଡେଣା ବିଜୟିନୀ—

ମୁକ୍ତ ତାର ଶୁକ୍ଳ ପକ୍ଷପର
ମୁକ୍ତ ବାତେ ଚୁମ୍ବଇ ଅମ୍ବର—

ପୟୁରେ ତା' ବାଜେ ସରମିତେ
ଘୁଙ୍ଘୁରୁର କଣି କଣି କଣି—
କହ, କେଉଁ ସେ ପଥ-ଗୃହିଣୀ ?

ବରଷା ତ ଆସିଚି ମହ୍ଲାରେ
ମୂକ ଗଣ୍ଡେ ସ୍ଫୁରଇ କଣିକା;
ଏଇ ଆଜ ମିଳନ-ମଲ୍ଲାରେ
ଫିଟିଅଛୁ ତୋ ଓ ମୋ କଳିକା;
ପଲ୍ଲବିତ କଅଁଳ ପତରେ
ଲଜ୍ଜାଶୀଳା ନବ୍‌ନାମ୍ବୁ ଝରେ;

ବସୁମତୀ ସୁଗନ୍ଧିତ କେଶେ
ସମୀରଣ ଲଗାଇଚି ନାସା
ଦୂର ହୁଏ ସକଳ ନିରାଶା ।

ଜୀବନର କମ୍ର-ତୂଳି ମୁନେ
ମୃଦୁ-ସ୍ପର୍ଶେ ଧରା-ପୃଷ୍ଠ-ପରେ
ଲେଖିଯାଏ ଅସମାପ୍ତ କାବ୍ୟ
ଶ୍ୟାମ ଶସ୍ୟ ସବୁଜ ଅକ୍ଷରେ;
ଝର ଝର ବାରିପାତ ଧାରେ
ମେଦୁରିତ ମୁକୁତା-ସୂତାରେ,

ପ୍ରାଣ-ପୁଷ୍ପ ଗୁଂଥି କର ଖରେ
ଥୁଅ ମୋର ପୋଥି ମାଳ କକ୍ଷେ
ଭ୍ରମର ସେ ଆଷାଢ଼ର ବକ୍ଷେ ।

ପ୍ରାତ—୭
ଚୈତ୍ର

## ଅନୁସ୍ୱର

ଆଜି ଏ ପ୍ରଭାତର ଶୁଭ୍ର ନୀଳ ନଭେ
ଉଦିଲା ନବ ରବି ସ୍ୱର୍ଣ୍ଣ ପ୍ରଭା,
ନରମ ସରୋଜନୀ ସରମେ ଆସେ ଫୁଟି
ଅରୁଣ ପାଦ ତଳେ ପ୍ରଣମି କିବା,

ସାଗର ବୁକୁତଳେ କନକ ତରୀ
ବାହିଲା କିଏ କହ ଆହୁଲା ଧରି,
ଶରଣ ବୀଚ ଲତା ମଳାଇ ଗଲା ଧୀରେ
ମେଦୁର ପୁନେଲର ଚିବୁକ ପାଶ
ଅବନୀ ମୁଖେ ଫୁଟେ କାଶର ହାସ ।

ଶଇଳ ସୁନ୍ଦର କୃଷ୍ଣ କୁନ୍ତଳେ
କଏ ଗୋ ଦେଲା ବାସ ଅତର ଢାଳି
ତଟିନୀ ଆଦରଣେ ପ୍ରଣୟ ପ୍ରତିମା କି
ପ୍ରତିଫଳନ କଲା ଅଂଶୁମାଳୀ,

ବିହଗ କଳତାନେ ଗାଇଲେ ଗୀତ,
ସୃଷ୍ଟି ମିଳନର ସୁଷମା ପ୍ରୀତ,
କୁସୁମ ମୁଖେ କାହିଁ ଅଧର ସରମିଲା
ତରୁଣ ଭୃଙ୍ଗର ସରସ ଭାଷା
ଆଜି ତା' ଅନ୍ତରେ ଅମର ଆଶା ।

ଆକାଶେ ପଡ଼ିଲାଣି ତରୁଣ ଅରୁଣିତ
ପହିଲ ସେନେହର ମଧୁର ଛାଇ,
କାହାର ହାତ ବାଜି ରୁଦ୍ଧ ଏ ଦୁଆର
ମୁକୁଳିଗଲା କାହା ସ୍ୱାଗତ ପାଇଁ ?

ଶ୍ୟାମଳ ପ୍ରାନ୍ତରେ ସାଧନା ଜାଗେ,
କମଳ କୁମାରୀ ଯେ ପରଶ ମାଗେ,
ଗୁବୁକ ବନ ଗାଏ ଚଞ୍ଚଳ ଅଭିସାରେ
ଚନ୍ଦ୍ର ମିଳନର ପୂର୍ବରାଗ
ଫର୍ଦ୍ଦ ବିରହର ମିଳନ ରାଗ ।

କବି ହେ ତମେ ଆଜି ମଉଡନେ ବସ ନାହିଁ
ସ୍ୱର୍ଣ୍ଣ ପାଲଟିଚ ପଥର ଧୂଳି,
ନୟନେ ଯାହା ଦେଖ ଚିନିଯାଅ ରସେ
ସରସେ ଫଗୁଳ ସୁନେଲି ତୂଳୀ,

ମରମ ତଳେ ଯେତେ ବାସନା ସାଇତିଛ,
ପ୍ରଭାତ ଅବକାଶେ ସେ ସବୁ ହେଉ ସ୍ୱଚ୍ଛ,
ଯାଅହେ ଅନୁଭବୀ ମଧୁର ସୁର କବି
ନିଜର ବିରଚିତ ପ୍ରଣୟ ନିଜେ
ଚିତ୍ତ ଦେବତା ଯେ ହୃଦୟେ ବିଜେ ।

ଶରତ୍ ପ୍ରାତ—୭
୭-୧୦-୫୧



## ବିପଂଚୀ ବରଣ

କେଉଁ ସଙ୍ଗୀତ ପାଇଁ ସତେ
ଦେଇଗଲ ବୀଣା ମୋର ହାତେ ।

ତନ୍ତ୍ରୀ ରହିଲ୍ ମିଳନ ନପାଇ,
ମୂର୍ଚ୍ଛନା ଦାନ ପ୍ରାଣେ ଲଭି ନାହିଁ,
ତଥାପି ବାଜଇ ଅନାହତେ—
କେଉଁ ସଙ୍ଗୀତ ପାଇଁ ସତେ ?

ପାହି ଆସୁଥିଲ୍ ସରମିତ ଊଷା,
କଳଟରେ ଫୁଟାଇ ଦରଦର ଭାଷା,
ପ୍ରକାଶ ପାଇନ ପରଭାତେ—
କେଉଁ ସଙ୍ଗୀତ ପାଇଁ ସତେ ଆହା
ଦେଇଗଲ ବୀଣା ମୋର ହାତେ ।

ସେଦିନ ବନ୍ଧୁ ଶୁଭ ମୁହୂର୍ତ୍ତେ,
କୋଟି ଜନମର ପୁଣ୍ୟ ଫଳର୍ଥେ,
ଚଳି ଯାଉ ଯାଉ ପିରତି ଉଷ୍ର
ଢାଳି ଢାଳି ଗଲ ଦୂର ପଥେ—
କେଉଁ ସଙ୍ଗୀତ ପାଇଁ ସତେ ତୁମେ
ଦେଇଗଲ ବଂଶୀ ମୋର ହାତେ ।

ବିପୁଳ ସେ ଦାନ ଦେଇ ଅଯାଚିତେ,
କଲ ହେ ବନ୍ଧୁ କଳାକର ମତେ
ତୁମ ଜୟଗାନ ଗାଇଯିବା ପାଇଁ
ଦେଇଗଲ କି ଗୋ ବୀଣା ହାତେ
ଆହା ସେ କଅଁଳ ଚରଣତେ ।

ଉଷା—୬
୪-୩-୪୯

## ପତାକା ବନ୍ଦନା

ଏଇ ଦେଖ ତ୍ରିବର୍ଣ୍ଣ ପତାକା
ବକ୍ଷେ ବହ୍ନି ଅଶୋକର ଧର୍ମଚକ୍ର ଟିକା
ହିମାଚଳ ମାପଦଣ୍ଡେ ଦୋଳି ଆସି
ତରଙ୍ଗିତେ ଉଡ଼ଇ ସେ ସ୍ୱୟଂଭୂ ପ୍ରଦର୍ଶିକା-
ସ୍ୱାଧୀନ ଦେଶର ସମୁଗ୍ଧ ପତାକା ।

କର ତାରେ ପ୍ରଣିପାତ ଆଜ
ଯୋଦ୍ଧା ବେଶ ସାଜ ।

ମାଳୟର ସ୍ନିଗ୍ଧ ଚଇତାଳେ
ପୁଲକ ଉଠଇ ତାର ବପୁ,
କଣ୍ଠୁ ପରେ ଉଠିଚି ଗୀତିକା
ହିମଗିରି ତୁଙ୍ଗ ସ୍ତମ୍ଭ ଧୂପୁ;
ସତ୍ତ୍ୱ ରଜ ତମର ପ୍ରତୀକ
ହେ ମୋର ଦେଶର ମହୀୟାନ୍,
ଆଜିର ଏ ଅଗଷ୍ଟ ପନ୍ଦରେ
ହୁଅ ତୁମେ ଚିର ଆୟୁଷ୍ମାନ୍;
ଦିଅ ଏଥି ସ୍ୱର୍ଣ୍ଣାଭ ସ୍ୱାକ୍ଷର—
ଲେଖାଯାଉ ନବୀନ ପଞ୍ଜିକା
ଭାରତର ଲଲାଟେ ସିନ୍ଦୂର ।
ଆଜିର ଏ ସୁଶୁଭ୍ର ଲଗନେ
ନେଇଥିଲ ତୁମେ ନବ ଜନ୍ମ—
ହେ ଶିଶୁ-ଭ୍ରାମନ୍ତକ, ମହାନ୍
ଆଜି ଏ ତ ତବ ଶୁଭଦିନ,
ଅବରୁଦ୍ଧ କାରାଗାର ଦ୍ୱାର
ଭାଜିଥିଲ ସତ୍ୟର ପରଶେ,
ତୁଟିଥିଲ ହାତରୁ ଶିଂକୁଳି
ଆଜିର ଏ ମଙ୍ଗଳ ପ୍ରତ୍ୟୁଷେ;
ଉଡ଼ିଥିଲ କମ୍ପାଇ ଗଗନ···
ଏଇ ଦିନେ ହୋଇଥିଲ ମୁକ୍ତ
ମାତୃଭୂମି
ଛିନ୍ନ କରି ଦାସତ୍ୱ ବନ୍ଧନ ।

ସେଇ ଦିନ ଆସିଛି ତ ଫେରି
ଉଡ଼ ଆହେ ଶୁଭ୍ର ମୋର ଧ୍ୱଜା
ବୀର ଦର୍ପେ ଗଗନକୁ ଝାଡ଼ି ।

ଗାଇଲେଣି ମୁକ୍ତ ବିହଗ
ଆଲୋକିତ ଦିଗ ଦୋହଲାଇ,
ତିନଶତ ବର୍ଷରର କୁଶୀ
ଉଡ଼ ଆଜ ବକ୍ଷରେ ଲୁଚାଇ;
ନଦ ନଦୀ ଉପତ୍ୟକା ପ୍ରାନ୍ତ
ନାଚଲେଣି ହର୍ଷେ ଅବଗାହି,
ଦରିଦ୍ର ମୋ କବି ବୀଣା ଧରି
ଯାଉଅଛୁ ଆଜ ଗୀତ ଗାଇ;
ଦେଶ ମୋର ପାଇଛି ହେ ମୁକ୍ତି
ଜାହ୍ନବୀର ଉଚ୍ଛ୍ୱସିତ ଉରେ
ଉଠିଛି ହେ ତରଙ୍ଗର ଯୁକ୍ତି ।

ଏ ମାଟି ତ ହସିଲାଣି ହର୍ଷେ
ଜନତା ମୋ ଆଜି ବିହ୍ୱଳିତ,
ମାଟିରେ ମୁଁ ସୁନା ଫଳାଇବି
ଝିଅଟି ମୋ ଗାଇବ ହେ ଗୀତ;
ଏ ଦେଶର କଅଁଳା ଶିଶୁଟି
ଡାକେ ଆଜି ଜୟ ଜୟ ବୋଲି—

ଉଠ ଆହେ କୁଜ୍‌ଝଟିକା ଖୋଳି,
ଅରୁଣର ଧୂପ ରଙ୍ଗ ଘୋଟେ
ପତାକା ହେ ସ୍ତମ୍ଭ ଶିରେ ଝୁଲି ।

ଏ ଦେଶର ବୀର ସେ ଶହୀଦ
ଡାକି ଉଠେ କବରର ତଳୁ,
ଗଲେ ତାର ଦିଅ ତୁମେ ବାରେ
ଉତ୍ପୁଲ୍ଲର ଚୁମ୍ବନ ଶ୍ରଦ୍ଧାଳୁ;
ଦେଖ ଆହେ ପତାକା ସୁନ୍ଦର—
କବରର ବକ୍ଷ ପରେ ଫୁଟେ
ମୃତ ବୀର ବନ୍ଧୁର ସ୍ୱାକ୍ଷର ।

ଦେଶ ପାଇଁ ସେ ଦେଇଛି ପ୍ରାଣ
ହସି ହସି ମରଣକୁ ବରି,
ପତ୍ନୀ ପାଶେ ଛାଡ଼ି ଶିଶୁପୁତ୍ର
ଯାଇଛି ସେ ଧ୍ୱଜାଦଣ୍ଡ ଧରି ।
ସେଇ ଆଜି କରେ ପ୍ରଣିପାତ
ତୁମ ପଦେ ମଥା ଥୋଇ ଧୀରେ,
ଆହେ ମୋର ମନୋଜ୍ଞ ପତାକା
କୋଳ କରି ନିଅ ସମାଦରେ ।
ସେଇ ତୁମ ଅମୃତ ସୈନିକ—
ଆଜିର ଏ ଶୁଭ୍ର ଦିନେ ତାକୁ
ବିଜୟର ମହୋତ୍ସବେ ଡାକ ।

ଖୋଲିଦିଅ ରୁଦ୍ଧ ତା’ କବର
ହିଲ୍ଲୋଳିତ ସମୀରଣ ସନେ,
ତ୍ରିବର୍ଣ୍ଣର ବୈଜୟନ୍ତୀ ତଳେ
ଆସିବ ସେ ତୁମ ଅଙ୍ଗନେ ।
ଆଗୁସାର ହୋଇ ତୁମେ ଚାଲ
ଅଗ୍ରଗାମୀ ନମସ୍ୟ ପତାକା,
ସ୍ନିଗ୍ଧ ଜ୍ୟୋତ୍ସ୍ନାତଳେ ଦେଖାଅ ହେ
ଏ ଦେଶର ପ୍ରକୃତ ଲିପିକା ।

କୁମାରିକା ସିନ୍ଧୁ ନୀରେ ଖେଳ
ଚୁମ୍ବ ତୁମେ ମୀନାକ୍ଷୀ ଶିଖର,
ବିନ୍ଧ୍ୟଗିରି କୁଞ୍ଜେ ହର ଶ୍ରାନ୍ତ,
ହିମାଚଳ କନ୍ଦରେ ବିହର,
ରଖି ତୁମ ଶୌର୍ଯ୍ୟ ପରିପାଟୀ—
ଭାରତର ନାଭିସ୍ଥଳେ ଉଠ
ତ୍ରିବର୍ଣ୍ଣର ପୁଣ୍ଡରୀକ ଫୁଟି ।

କୋଟିକଣ୍ଠେ ଗାଇବେ ଉଦାତ୍ତେ
ଜନଗଣମନ କାବ୍ୟ ଗୀତି,
ଏ ଦେଶର ତରୁଣ ଯୁବାନ୍
ବକ୍ଷେ ଧରି ଜାତୀୟତା ପ୍ରୀତି ।

ଘର୍ଘରିତ ତୂର୍ଯ୍ୟ ଦେଇ ମୁଖେ
ଦେବେ ଫୁଙ୍କି ଅନ୍ତରୀକ୍ଷେ ମାରି···
ପ୍ରଭାତର ରକ୍ତ ସୂର୍ଯ୍ୟ ତଳେ
ନନାଦର ମୟୂଖ ବଙ୍କୁରି ।
ନେବେ ସେହୁ ସତ୍ୟ ପରିଗ୍ରହ
ପ୍ରଭେଦରହିତ ବଶ୍ୱପଥେ
ଶାନ୍ତି ମନ୍ତ୍ର ଦୀକ୍ଷା ପରିଚର୍ଯ୍ୟା
ମୈତ୍ରୀବାହୁ କେୟୂର ବେଷ୍ଟିତେ ।
କାଲି ପାଇଁ ନେବେ ନୂଆ ଆଶା
ଗଢ଼ିବେ ସେ ଧରଣୀ ନୂତନ,
ଧର୍ମଧ୍ୱଜା ଚୁମ୍ବା ତଳେ ବସି
ସ୍ୱବିଧାନ କରିବେ ରଚନ ।
ଜଘନ୍ୟତା ଅନ୍ଧାରକୁ ହାଣି
କଂକାଳ ଓ ଆଭିଜାତ୍ୟ ମଧ୍ୟେ
ଉଚ୍ଚାରିବେ ମନ୍ତ୍ର ସାମ୍ୟ ବାଣୀ ।

ଧ୍ୱଜାପୀଠ ତଳେ ଉଠୁ ଆଜ
ଅହିଂସାର ସୁରଭିତ ଧୂପ,
ସତ୍ୟ ଶିବ ସୁନ୍ଦରର ଶିଶୁ
ଖେଳୁ ଏଥି ବହି ନବ ରୂପ ।
ତାହା ସାଥେ ଏ ଦେଶ ଜନତା
ପୁଲକରେ ଧାଇଁ ଯାଇ ମିଶୁ
ହେ ସତ୍ୟ-ସୋମପାୟୀ ପ୍ରବୁଦ୍ଧ—
ବୃଦ୍ଧ ଯୁବା ଯୁବତୀ ଓ ଶିଶୁ—

ଗୃହଲ ଏଇ ପୁଷ୍ପାସ୍ତୃତ ପଥେ
ଘୁଚିଲେ କାହ୍ନ ବିଜୟପୂର ଟିକା
ବହୁଯୁଗ ହୁତ ଉପେକ୍ଷିତ
ପ୍ରତୀକ୍ଷମାନା ଅଭିସାରିକା ।
ହସ୍ତେ ଧର ଅର୍ଘ୍ୟର ଚଡ଼ୁଆ
ଶଙ୍ଖ ଧୂପ ହରିତକ ଶସ୍ପ
ହୃଦେଶର ଧ୍ୱଜାସ୍ତମ୍ଭ ତଳେ
ବିକଶାଅ ଶତଦଳ ପୁଷ୍ପ;
ଜଳାଅ ହେ ଆଲକ୍ଷ ପ୍ରଦୀପ—
ଫୁତ୍କାର ହେ ଉଚ୍ଚେ ଦେବଦତ୍ତ—
ଶୁଭ୍ର ଦୁଇ କରତେ ଯୋଡ଼ି
କର ଆଜ ମୂର୍ଦ୍ଧ ପ୍ରଣିପାତ ।

ପ୍ରଘାତ—୭
୨୨-୮-୪୦

## ସ୍ନାନାର୍ଥିନୀ

ବହୁବାର ଦେଖା ଧରଣୀର ଏଇ
ବଂଧୁର ପଥେ ପଥେ,
ସନ୍ଧ୍ୟା ଗୋଧୂଳି କ୍ଷୀଣାଲୋକେ ପୁଣି
ହେମନ୍ତ ପରଭାତେ ।

ବହୁବାର ଦେଖା ବସନ୍ତ ବନେ
କୋକିଳ ମଧୁର ଗାନେ
ମତ୍ତ ଅଳିର ନୃତ୍ୟ ଲଳିତ
କୋମଳ ପୁଷ୍ପାସନେ ।



3

ଶିଶିରସିକ୍ତ ହିମଳ ପବନେ
ଥରିତ ରଙ୍ଗାଧରେ,
ମୃଦୁ ବର୍ଷଣେ କମ୍ପିତ ତନୁ
ଆର୍ଦ୍ର ବସନ ତଳେ;

ବହୁବାର ଦେଖା ବଳୟିତ ଭବେ,
ତା'ରେ ମୁଁ ଗଣନା କରିନାହିଁ ଲବେ,
କିନ୍ତୁ ଆଜ ଏ ସୁନେଲି ପ୍ରଭାତେ
ମିଶିଛ ବୃନ୍ତେ କଳି
ସଜମା ଏ ମୋର ହୃଦୟ-ଗଣ୍ଡେ
କି ମୋହ ଦେଲ ଗୋ ବୋଲି ।

ବନ୍ଧୁ ଗୋ ତୁମେ ଶେଷ କରି ଯେବେ
କର୍ପୂର ଜଳେ ସ୍ନାନ,
ପ୍ରସାଧନ ପାଇଁ ଫେରିଲ କକ୍ଷେ
ବସନେ ଫୁଟାଇ ଗାନ,—
ଚୂର୍ଣ୍ଣଚିକୁର ଗଂଧ ମାଧୁରୀ
ପ୍ରସରି ମଳୟାନିଳେ,
ଏମନ କୁଞ୍ଜେ ପୀରତି-ଗୁଚ୍ଛ
ପୁଷ୍ପାଇଲି ଗୋ ଠୂଳେ ।

ତୁମେ ଚଳିଗଲ ନିତମ୍ବ ଭରେ
ଦୋଳାୟି ସିକ୍ତ କେଶ,
ବିନ୍ଦୁ ବିନ୍ଦୁ ଥୋପି ପଡ଼ୁଥିଲ
ଚରଣେ ମୁକ୍ତା ଶ୍ଳେଷ ।

ମୁକ୍ତା-ସ୍ୱଚ୍ଛ-ମୁକୁରେ ଦେଖିଲି
ତୁମର ମୁଗ୍ଧ ରୂପ,
ଜୀବନର ଭର-ସାମ୍ୟକୁ ଧରି
ଖେଳୁଛ ଗୋ ଅନୁରୂପ ।

କୁନ୍ତଳ ତଟେ ଦୋଳି ଆସିଥିଲା
କେତୋଟି ସଲିଳ ବିନ୍ଦୁ,
ଦର୍ଘ ନୀରଦ ତଳେ କିବା ସେହୁ
ଶୁଭ୍ର ଶରତ ଇନ୍ଦୁ ।

ଇନ୍ଦୁ-ମୁକୁରେ ଦେଖିଲି ତୁମର
ମଧୁର ପୀରତ ଛାୟା
ତୁମେ ଗୁଳିଗଲ ଅନ୍ତରେ ଦେଇ
କି ଗୂଢ଼ ମମତା ମାୟା,
ଆଗୋ ମୁଗ୍ଧା ପ୍ରିୟା ।

ସେଦିନୁ ଗୋ ମୁହିଁ ତୁମ ପଥ ଗୁହିଁ
ବସିରହେ ସ୍ନେହାତୁରେ,
ଚନ୍ଦ୍ର କପୋଳେ ଅଳପେ ନୁଆଁଇ
ଏମନ ଗଣ୍ଡ ଧୀରେ ।
ସୂର୍ଯ୍ୟ ଉଠଇ ଆକାଶ ଉପରେ
ଢଳିଯାଏ ଅପସରି—
ସ୍ନାନାର୍ଥିନୀ ଗୋ ଆଉ ତ ଫେରୁନା
ରହି ମୁଁ ଅଭିସାରୀ— ।

ପ୍ରଭାତ—୯
୧୦-୧୦-୪୩

# ଅବଶ୍ୱାସ

ନଶି ତେଜେ ଘର୍ଦ୍ଧ ଅମ୍ଳଜାନ
ଉଷା ଟେକେ ନୟନ ପଲକ,
ଦେବାଳୟୁ ଚୂଳେ ପାର୍ବତ
ଗାଏ ଛୁଏଁ ସୂର୍ଯ୍ୟର ପୁଲକ ।
ଅଙ୍ଗ ତାର ହୁଏ ରୋମାଞ୍ଚିତ
ସ୍ଫୀତ ବକ୍ଷ ଯେହ୍ନେ ପାଏ ନଧି,
ଗତକାଳର ସକଳ ଧାରଣା
ଶୁଭ୍ରାକାଶେ ଲଭଇ ସମାଧି ।
ମନେହୁଏ ସବୁ ଖାଲି ଭ୍ରମ,
ଗତଦିନର ସମସ୍ତ କୌଶଳେ
ଫଳେ ନାହିଁ ଛଳେଦ୍ୱେଳେ ଶ୍ରମ ।

ଗତବାସେ ଯାହା ସେ ଦେଖିଲି
ଆଜି ସବୁ ଧରେ ଇନ୍ଦ୍ରଜାଲ,
ଗତକାଲର ସୁଶ୍ୟାମଳ ପଥ
ହୁଏ ଆଜି କଣ୍ଟକିତ ଖାଲ ।
ସଞ୍ଚିଥିବା ମଧୁ ଦ୍ରାକ୍ଷାରସ
ହେଲି ଅବା କାହୁଁ ଏତେ ତିକ୍ତ,
ଗତକାଲର ଜୀବନ ତ ଆଜି
ଦୁର୍ବିସହ ଅବସାଦଗ୍ରସ୍ତ;
ଏମନ ତ ଏ ଜୀବନ ଚ୍ଛଳେ—
ବୈଶାଖର କଥର ନିଃଶ୍ୱାସ
ଝରିଆସେ ଅଶ୍ରୁ ରୂପେ ଗାଲେ ।

କାଲି ବସି ବର୍ଷଣ ନିଶୀଥେ
ଲେଖିଲି ଯା ଗୋଟି ଗୋଟି ଗୀତ;
ଚକ୍ଷୁତଟେ ନାହିଁ ମୋର ନିଦ୍ରା
ବସୁଧାରେ ଆସିଗଲି ଶୀତ;
କାଲିକାର ଅସୀମ ଆନନ୍ଦେ
ରହେ ଆଜି ଘର୍ଘ ଅନୁତାପ,
ଆକାଶରେ ଲିଭିଯାଏ ହାସ୍ୟ
କ୍ଷଣିକ ସେ ଗୂଢ଼ ଇନ୍ଦ୍ରଗୃହ;
ମନୁ ଉଠେ ପ୍ରଶ୍ନର ନିଃଶ୍ୱାସ—
ଏ ଜୀବନ ପାଇଁ ଅଛି କିବା
ଅନ୍ତରରେ ତିଳେକ ବିଶ୍ୱାସ ?

ବୈଶାଖ ନିଶି—୧୨
୧୩-୪-୪୭

# ଗାଂଧୀ

ପେଲବତା ଗୃହୁ ପଦ୍ମ କାନନେ
ଫୁଟି ହେ କୌଞ୍ଜାଦର୍ଶୀ,
ଭାରତ ଗଗନେ ଶୌର୍ଯ୍ୟ ସୂର୍ଯ୍ୟ
ମହାନ୍ ଊର୍ଦ୍ଧ୍ୱସ୍ୱିମା ।
ସୁପ୍ତ ବିହଗ କଣ୍ଠରେ ଆଣି
ଲୋକରଞ୍ଜନ ଗାନ,
ହିଂଶତ ଦଶ ସଂବତ୍ ଠେଲି
କୁଜ୍ଝଟି ଆବରଣ ।

ଉଦ୍ଧତ ସତ୍ୟସଂଧୀ,
ଜୟ ହେ ଗାଂଧୀ ଜୟ ହେ ଗାଂଧୀ
ଜୟ ହେ ବିଜୟ ଗାଂଧୀ ।

ତୁଙ୍ଗ ତୁଷାର ହିମାଦ୍ରି ଶିରେ
ଉଡ଼ାଇ ଶୁଭ୍ର କେତୁ,
ଅମା ଶର୍ବରୀ ଗୁମ୍ଫିତ ତମେ
ଦେଇ ଉଷାଲୋକ ପ୍ରାନ୍ତୁ;
ନିଃକ୍ଷେପିୟୁ ଭାରତ ଭାଗ୍ୟେ
ଆସିଛ ମହାନୁଭବ,
ପ୍ରଶାନ୍ତ ରୂପ କରୁଣା ଆଧାର
ସଦା ଉପାସନା ଶିବ;
ଅହିଂସା ଧନୁ ଧରି—
ଲକ୍ଷ୍ୟ ସାଧନେ ଗୃହୀଛ ତେବେ ଆଜ
ଭୋଗପଥ ପରିହରି ।

ଶୀର୍ଣ୍ଣ ତୁମର ବାହୁର ବଳେ
ପୃଥ୍ୱୀ ଯାଇଛ ମିଶି,
ଧନ ଦୁସ୍ଥ ଓ ସମ୍ରାଟେ ଦେଇ
ସାମ୍ୟ ମେଖଳା ରସି;
ବଞ୍ଚିତ ହୀନ ଲାଞ୍ଛିତ ପାଇଁ
ହୃଦୟର ଅନୁବ୍ୟଥା,
ରଖିଛ ତାହାର ଅନ୍ତରେ ତୁମ
ଅଶ୍ରୁର ଦୁଇ ଛଟା ।
ସୁସୌମ୍ୟ ସୁହୃଦତା—
ସତ୍ୟଦେଶର ସମ୍ରାଟ ପାଇଁ
ରଖିନାହିଁ ଉଣା ବ୍ୟଥା ।

ପୀଡ଼ିତ ଦଳିତ ଆଫ୍ରିକାବାସୀ
ଦୁର୍ଦ୍ଦଶା ଦେଖି ସେଠି,
ଅତ୍ୟାଚାରର ବିରୁଦ୍ଧେ ଲଢ଼ି
ଯାଇଚ ଗୋରାର ଲାଠି;
ତଥାପି ଲଢ଼ିଚ ଜୁଲୁ ବିପ୍ଳବେ
ଆଦର୍ଶ ଅନୁସରି,
ଅତ୍ୟାଚରିତ ତୁମ ଏ ଦେଶର
ସେବକ ସୈନ୍ୟ ଧରି;—
ହିଂସିନାହଁ ତ କାରେ,
ସାଧୁ ଅହିଂସ-ସଂଗ୍ରାମ ପଥେ
ହିଂସା କି କରିପାରେ ?

ଦେଶପାଇଁ ତୁମେ ଆସିଚ କି ଦେବ
ମର୍ତ୍ତ୍ୟରେ ଅବତରି,
ଦଧୀଚି-ଅସ୍ଥି ଦେଶ ଉତ୍ସର୍ଗେ
ଦେବାପାଇଁ ଯାଏ ଥରି ।
ହରିଜନ ହିତେ ଅନ୍ତରୁ ତୁମ
ଜାହ୍ନବୀ ଯାଏ ଖସି,
ପତିତର ସଖା ମତଙ୍ଗ ମୁନି
ହେ ମନ୍ତ୍ର ଉପଦେଶୀ;
ଅଧ ଲଙ୍ଗଳା ଋଷି—
ମାନ ଓ ଧର୍ମ ଦ୍ୱିଜ-ଚଣ୍ଡାଳ
ଅପୂର୍ବ ସମାବେଶୀ ।

ପୋର ବନ୍ଦର ଚତୁର ନାବିକ,
ସତ୍ୟ-ବୋଇତ ବାହି,
କୃଷକର ପାଇଁ ଅଜାଡ଼ିଚ ଲହୁ
କାଇରା ପ୍ରାନ୍ତ ଯାଇ;
ଲବଣ ସତ୍ୟ ଆଗ୍ରହେ ତୁମେ
ପାଇଚ ମର୍ମାହତ,
ସାଗର ସଲିଳ ମନ୍ଥିବା ପାଇଁ
ଲୋଡ଼ା ପୁଣି ଅନୁମତ;
ଉଦ୍ଧତ ସରକାରେ,
ଦେଇ ପଦାଘାତ ଫେରିଚ ହେ ତୁମେ
ସାବରମତୀର ତଟରେ ।

ଗ୍ରାମେ ଗ୍ରାମେ ଭ୍ରମି ଉଡ଼ାଇଚ ତୁମେ
ପୁଣ୍ୟ ଚରଣ ଧୂଳି,
କୁଟୀର-ଶିଳ୍ପ କଳାରେ ବୁଲାଇ
ପ୍ରୀତିର ପରମ ତୁଳି;
ଚରଖାଚକ୍ରେ ଯଜ୍ଞ ପଇତା
ବୟନର ପାଇଁ ତୁମେ,
ଉଦ୍‌ବୋଧିଚ ହେ ସନ୍ତାନଗଣେ,
ସ୍ୱଦେଶୀ ସ୍ୱସର୍ଜନେ,
'ପରାଧୀନ ନୁହ ନୁହ,
ସକଳ ଜୀବିକା ନବେ ଆତ୍ମ-
ନିର୍ଭରଶୀଳ ହୁଅ' ।



4

ଦସ୍ୟୁର ପଦ ତଳେ ଲାଞ୍ଛିତ
ଶୃଙ୍ଖଳ କୋଟିର ଦଶା,
ସହ୍ୟ ନପାରି ସେ ନର୍ମମ ମାତ
ପୀଡ଼ିତ ରକ୍ତ ଶ୍ଳେଷା,
ସତ୍ୟ-ଶାଣିତ ଅହିଂସା-ଶର
ଜନତା-ତୂଣୀରୁ ଫେଇ,
ଧର୍ମଗୁଣରେ କଷି ବନ୍ଧନ
ମାତ-କୋଦଣ୍ଡେ ଦେଇ;
ଶାନ୍ତ ସମରେ ତୁମ,
ଲୋଡ଼ା ତ ନଥିଲା ଭାରତର ପାଇଁ
ଅସ୍ତ୍ର ଆସ୍ଫାଳନ ।

ଭରତ ମୁକ୍ତ ସଗ୍ରାମେ ତୁମ
ଶାନ୍ତର ଶୃଙ୍ଖଳା,
ବ୍ରିଟିଶର ତହୁଁ ଦୁର୍ବଳ ଶିଶୁ
ଅଶ୍ଳୀଳ ଅଳଟେଳା;
ଇଂରେଜ ତୁହ୍ନ କଲା ହେ ଘୋଷଣା
ଦୂରହାଟ୍ ଦୂରହାଟ୍,
ଏ ପଥେ ଯିବେରେ ସନ୍ତାନ ମୋର
ପଳାତକ ଛାଡ଼ ବାଟ,
ରହଣି ଲୋଡ଼ାନ ଏଥି—
ଗଢ଼ିବରେ ମୁହିଁ ସଂସାର ନୂଆ
ଘତ ଖଦା ଆଉ ମାଟି ।

ହେ ମୋର ଦେଶର ଖ୍ରୀଷ୍ଟ ପ୍ରତିମା
ପଥିକ ଅଗ୍ରଗାମୀ,
ଆଦର୍ଶ ପଥେ ଚିର ପ୍ରତିଜ୍ଞ
ଅପୂର୍ବ ସଂଯମୀ,
ମିଥ୍ୟା ତ ଲବେ ଫିଟିନାହିଁ ତାର
ମୁଖ ପ୍ରାନ୍ତରେ ଛୁରି,
ଖଦଡ଼ ଯାହାର ଅତି ପ୍ରିୟତମ
ଶୀର୍ଣ୍ଣ କଟୀ ବେହର,—
ହସ୍ତେ ଯଷ୍ଟି ଧରି···
ପଲ୍ଲୀ ଓ ପୁର ପଥପରେ ଢାଳେ
ପଦ୍ମର ଉତ୍ସ ।

ସାବରମତୀର ତୀରେ ସେ ବସିଲା
ଜଳାଇ ଯଜ୍ଞାନଳ,
କଙ୍କାଳ ପାଇଁ ନିତ୍ୟ ବ୍ୟାକୁଳ
ହେଲା ଅନ୍ତର ତଳ,
କୁଳସମ୍ଭବା କଙ୍କାଳମାର
ନବସ୍ତ୍ର ଅନୁଧାନ,
ପୁଣି ପ୍ରାଙ୍ଗଣେ ଛାଡ଼ି ଯେତୁ ଗଲା
ଅଙ୍ଗର ପରିଧାନ,
ବପୁ ତା' ଝଲସି ଉଠେ,
ଶତ ସୂର୍ଯ୍ୟର ପ୍ରଦୀପ୍ତ ଆଭା
ଦଳି କି ବିକଶି ଫୁଟେ ।

ଭାରତ ଗଗନେ ଉଡ୍ଡୀନ ପତାକା
ତବ ଜୟ ନାମ ବହି,
କୁମାରିକା ନୀଳ ସିନ୍ଧୁ ସଲିଳେ
ତରଙ୍ଗ ଉଠେ ଗାଇ,
ଚକ୍ଷୁ-ଯମୁନା ବୋଇଛି ଯେ ତାଳ
ବିଶ୍ୱ-କରୁଣା-ଯାଗେ,
ତା'ପାଇଁ ଉଠଇ ବିଶ୍ୱ-ଆଳୟେ
ଉଚ୍ଛ୍ୱାସ ଅନୁରାଗେ—
ଶୁଭ ବ୍ରହ୍ମଋଷି
ବିଶ୍ୱ-ପଥରେ ପଥିକ ସେ ଆଜ
ସତ୍ୟର ଅଭିସାରୀ ।

ସୁଧା—୭
୧୦-୨-୫୭

# କାବ୍ୟ-ନାୟିକା

ମନ-ତରୁ-ଡ଼ାଳେ କଳିକା ଧରଇ କବିତା,
ମଉନେ ଭାବଇ ଯେବେ ଆଖି ମୁଦ୍ଧ କବି ତା';
ଝର ଝର ଝର ବହିଯାଏ ପ୍ରାଣ ସରିତା,
ଅଙ୍ଗନେ ମୋର ଉଭା ହୁଏ ଶୋଭା ବନିତା ।

ଅଧରେ ଫୁଟାଇ ସେହୁ ସୁମଧୁର ବଚନ,
ଅସ୍ଫୁଟେ ମୁଖେ କହଇ ମଉନ ବାରତା,
ଜୀବନ ଖୋଜଇ କାନ୍ତ ପ୍ରାଣର ଜୀବନ,
ଅନ୍ତର ଧୂପେ ଜଳାଇ ପ୍ରଣୟ-ସଳିତା ।

ପୁଷ୍ପ ଆନତ ଗଣ୍ଡପରେ ଝରେ ଜୋଛନା,
ଲଲାଟେ ଝଲସେ ଅପୂରୁବ ଜ୍ୟୋତି ଆଲୋକ,
ନାସିକା ଉପରେ ତିଳ ପୁଷ୍ପର ବାସନା
ଗଣ୍ଡ-ଫଳକେ ବନ୍ଧୂକ ଫୁଲ ମହକ ।

ସକଳ ରୂପର ଶୋଭା ସମ୍ଭାର ଧରି ଗୋ,
ଉଭା ହୁଅ ତୁମେ ମାରବେ କକଥା କହି ଗୋ;
ହାତର ଥାଳରେ ଜଳଇ ପ୍ରଦୀପ ଧରି ଗୋ,
ଅନ୍ତରେ ମୋର ଆସେ ତା' ଗନ୍ଧ ବହି ଗୋ ।

ସେଇ ମହକରେ ଜାଗିଉଠେ ମୋର ଲେଖଣୀ
କୋଟିଏ ପ୍ରାଣର ଶତ କୋଟି ସୁଖ ବେଦନା,
ଆଜି ବସେ ମୁଁ ଏଇ ଜନ୍ମର ଜୀବନୀ
ଗୁଣି ସ୍ରଷ୍ଟାର ଗୁରୁ ମହତ୍ତ୍ୱ ଗାରିମା ।

ଚୈତ୍ର ଗୋଧୂଳି—୭
୨୨-୪-୫୭

## ଚିଠୀ

ସ୍ନେହର ଶୁକ୍ତି !
ତମ ଚିଠି ପାଇଚି,—
ଯକ୍ଷର କରୁଣ ଅଶ୍ରୁ ଭୂଧରର ନୟନେ ଜାଗିଚି ।

ପ୍ରସ୍ତରିତ ଗିରି ସାନୁ ରନ୍ଧ୍ରେ
ବାଦଲ ବୁଲାଏ ତାର ଅଳସ ଅଙ୍ଗ-ତନୁ;—
ଆହାରର ଗୁରୁ ଓଜନେ
ନିପୀଡ଼ିତ ଓ ମନ୍ଥର ତାର ଗତି,—
ଗର୍ଭେ ଚୁଚୂନ୍ଦ୍ରାର ସ୍ଥିତି ।

ଆଜି ବୁଝିଲି ତୁମ ପରିସ୍ଥିତି ।

ତୁମେ ଅଛ ମଗନ,
ପଡ଼ିଅଛ ମନେ
ଦୀର୍ଘ ବ୍ୟବଧାନେ,
ମେଘ ଉଠେ ଗଗନ ଗହ୍ବରେ ଶତ ଯୁଗର ପାଷାଣ ପ୍ରମଥି ।

ମୃତତରୁର କର୍କଶ ବଲ୍କଲ ଚଉପାଶେ
ସେଇ ମେଘ ଆଜି ନିର୍ଲଜ୍ଜେ ଭିଡ଼ଇ ମଲା,
ନିଦାଘର କ୍ଷିପ୍ତ ଝଞ୍ଜା ଘୂର୍ଣ୍ଣିବାତ ପରି,
ଉଦ୍ଭିଦର ବନ୍ୟାପ୍ଲୁତ କୁଲୟେ
ଅଶ୍ରୁସିକ୍ତ ଶିଶିର ଛିଡ଼ଇ ।
କଣ୍ଠର ଅବରୁଦ୍ଧ ବଳୟେ
ମାରେ ଆଜି ବୁଭୁକ୍ଷିତ ବ୍ୟାଘ୍ର ସମ ହାଇ;—
ଦୂରେ ଥାଇ—
ବନର ପାଂଶୁଳ ପକ୍ଷୀ ଡ଼ାଳ ପରେ ଏବେ
ଖାଦ୍ୟ ଉଦ୍‌ଗାରଇ ।

ଦୂରେ ତୁମେ ଯାଇଚ ତ ଚଳି
ଏଇ ମୋର ନଷ୍ଟ ନୀଡ଼ ମନୁ—
ଆକାଶର ପ୍ରାଚୀ ଶୀର୍ଣ୍ଣ ଖାଲେ
ଛିଡ଼ିଲାଣି ଇନ୍ଦ୍ରଧନୁ,
ମ୍ଲାନ ଭାନୁ—
ଲୂତାର ବର୍ତ୍ତୁଳ ଗେହ ପାଶେ
ଫାଶି ନଏ ସ୍ତିମିତ ଗଗନୁ ।

ବପ୍ଲବର ବୃଂହଣ ଧ୍ୱନି
ମେଘର ମଳିନ ଦେହରେ କ୍ଷିପ୍ର ବାୟୁ
ଲଗାଏ ରେ ଅଗ୍ନି ମେହଗାମୀ ।

ଶତଦଳ ପାଖୁଡ଼ାକୁ ଆଣି
ଚିରେ ଆଜ ଦନ୍ତର ତୀକ୍ଷ୍ଣ ଧାରେ,
ନୀଳଚନ୍ଦ୍ର ବାହୁ ଧରି ଟାଣି
କ୍ଲାନ୍ତ ତାର ବକ୍ଷେ ମୁଷ୍ଟି ମାରେ ।

ତମେ ଆଜ କେତେ ଦୂରେ × ×
ତମର ଚିଠିଟି ଆଜ ମୋ ହାତରେ ।
ଶୁଭ୍ର ସେ ଶୃଙ୍ଗରୁ ହସ୍ତାକ୍ଷର
ଲୁଧରେ ଲଗିଚି ଆଜ ନଦୀଘର
ଶେଷ ଇସ୍ତାହାର ।

ଶିପ୍ରାନଦୀ ବହିଯାଏ ଧୀରେ ତୁମେ ନୁହଁ
ଉଜ୍ଜୟିନୀ ପୁରେ,
ତୁମର ନିଃଶ୍ୱାସ ଆମ ମହୀଧର
ଆକାଶକୁ ମାରେ ।

ନାହିଁ ଆଜ ଆଉ କାଳିଦାସ;
ଖସଡ଼ା ବାଟରେ ବର୍ଷା ମାରେ ତାଳି,
କରେ ଅଟ୍ଟହାସ ।

ମାଟି-ଗନ୍ଧ ଲୁଟିତ ଭୂମିରୁ
ଉଡ଼ୁଥିଲାଏ ନଦୀର ପ୍ରବାହେ,
ଏ ପଥେ ଏ ବରଫ ନଉକା
ଝଟିକାର କାଟେ ବହିଯାଏ ।

ଏ ପଥରେ ଆଜ ନାହିଁ ତ ବିଶ୍ୱାସ,
ପ୍ରତିଧ୍ୱ ମୋ ପାଦରେ ଭଗ୍ନପ୍ରୋଥୁ
କରେ ସଖି ମୃଦୁ ଉପହାସ ।

ଗୋଲାପ-କଳିକା-କୁଞ୍ଜେ ଜଳେ ଆଜ
ଅନଳ ହୁତାଶ—
ତୁମର ଅସ୍ତିତ୍ୱ ଦେଇଛ ହାତେ ମୋର
ଲୌହର ଶିକୁଳ ଅନୁକ୍ରୋଶ ।

ସୃଷ୍ଟିର ପ୍ରଥମ ଆହ୍ୱାନେ ଶେଷ ହେଲା
ଶୁଭ ପାଂଚଜନ୍ୟ
ଥିଲା ବାଙ୍କ ଅତହିଁ ଜଘନ୍ୟ,
ପ୍ରାଚୀରେ ରକ୍ତ କହ୍ନାଚଲା
ପାଞ୍ଚାଳୀକୁ ଦେଖିତ ରେ ଖ୍ରମ ।

ଜୀବନର ତମିର ଗଗନେ ଦେଖାଦିଏ ନାହିଁ
ଆଶା-ରେଖା-
ଉଡ଼େ ଖାଲି ସ୍ଫୁଲିଙ୍ଗ କଣିକା—
ଆଜି ମୁହିଁ ଅତି ନଗଣ୍ୟ, ଅତହିଁ ନସଖା ।

ଚିଠିର ଉତ୍ତର ଅପେକ୍ଷାରେ ଅଛ ଗୃହିଁ ?—
କନ୍ତୁ ତୁମ ପାଶେ କଲମଟା ମୋର ରହିଗଲା କାହିଁ ।
ଆଜି ସୋମବାର, ଗତ କାଲି ଛୁଟି
ଚିମ୍ନି ଉପରୁ ଧୂଆଁ ଆସିଲାଣି ଆକାଶରେ ଫୁଟି × ×
ସବୁ ମୋର ତ୍ରୁଟି—
କାଲିକି ଲେଖିବି ତୁମକୁ ଆଉ ଗୋଟାଏ
ଆନନ୍ଦର ଚିଠି ।

ଭାଦ୍ର ପ୍ରଭାତ-୯
୧୭-୮-୧୯୫୪

## ନର୍ଯ୍ୟାସ

ହେ ଶିଳ୍ପୀ—ମୁଗ୍‌ଧ—କେତେ ତନ୍ମୟ;
ରଙ୍ଗ-ପାତ୍ରେ ବୁଡ଼ି ଯେ ରହିଲ
ଅକଂପିତ ହାତର ତୂଳିକା !
ଛବି ତୁଣି ଅର୍ଦ୍ଧଅଙ୍କା ।

କୁଟୀର ଦୁଆରେ ଆସି ହେଲ ଉଭା ସ୍ମିମିତ ପ୍ରଦୋଷ
ସମସ୍ତ ଯାଉଚ ଗୃଲ, ନଶି ପ୍ରାପ୍ତ ଉପଗତ;
ଦ୍ୱନ-ଦୀପ-ପାତ୍ରେ ତୈଳ ହୁଅଇ ନଃଶେଷ;

ବଳପିଲ୍ ଚକ୍ରବାକ,
ଉଠ ଶିଳ୍ପୀ—
ନକର ହେ ମଠ—
ଅପୂର୍ଣ୍ଣ ଚିତ୍ର ଆଜ ବେଗେ ବେଗେ ଆଙ୍କ ।

ପିଆଶାଳ ତରୁଶାଖା
ସାଂଧ୍ୟ ସମୀର କଂପନେ
କରେ ଶବ୍ଦ
ଘୁସ୍‌ଘୁସ୍
ଅସ୍ପଷ୍ଟ କ୍ରନ୍ଦନ ।
ଗୋଧୂଳି ଲଗନ—ମାହେନ୍ଦ୍ର ବେଳା—
ଏ ଶୁଭ ମୁହୂର୍ତ୍ତେ କର ପ୍ରତିମା ସମ୍ପୂର୍ଣ୍ଣ ।

ଫେରିଲେଣି ପକ୍ଷୀକୁଳ ମାତୃମୁଖେ
ନଭତଳେ ଗୃଜି ଲୋହିତ ପକ୍ଷ
ଗାଣ୍ଠି
ସ୍ତନନ୍ଧୟ ପାଶେ ।

ତୁଳସୀ ଚଉଁରା ମୂଳେ ଦେଇ ସଞ୍ଜଦୀପ
ଅଧାବାଟେ ଫେରିଲେଣି ପଲ୍ଲୀବଧୂ,
ଝଲସିତ ଖଦ୍ୟୋତ ଦୁ୍ୟତିସମ
ସାଂଧ୍ୟ ଶୋଭା
ଲଭିଆସେ ଦୂର ଦିଗପ୍ରାନ୍ତେ ।

କ୍ଷୀଣାଲୋକ
ଉଷାଙ୍କୁର କୃଷ୍ଣସାର
ଚାହିଁଥିଲା ଲତାସ୍ମିତ ପତ୍ରାନ୍ତରାଳେ,
ଚଞ୍ଚଳ ପଦ୍ମ ଦେଲା ନୀରବ ନର୍ତ୍ତନ
ନଦୀଧାରେ ଲଗାଇଲା ଶୁଷ୍କ କଣ୍ଠାତଟ ।

ଶିଳ୍ପୀ, ହେ ଶିଳ୍ପୀ, ନକର ହେ ଅଭିମାନ,
କାଳ-ପାରାବାରେ ଅତି କ୍ଷୁଦ୍ର ହେ ଜୀବନ ।
ଅନାଇ ରହିଛ—ମୋ ଆଡ଼େ ନପକାଇ ପତା,
ଉଦ୍‌ବେଗରେ ଡ଼ାକେ ବାରମ୍ବାର,
ତଥାପି ନଶୁଣ—

ଆଗୁ ଲୋକ !
କେତେ ବଦ୍ଧେର !
ହେ ଶିଳ୍ପୀ !
ହସୁଛ— ? ମୋ ଡ଼ାକ ଶୁଣି ?
ଥରୁଛ ଯେ ପଳିତ ଶ୍ମଶ୍ରୁ
ଏ କ'ଣ !!

ପ୍ରକଂପିତ ଅଙ୍ଗୁଳି ମଧ୍ୟେ ତୂଳି ଛଟପଟ
କିବା ପ୍ରସବ ବେଦନା,
କୃଷ୍ଣ ବିନ୍ଦୁ
ସ୍ଫଟିକ ପ୍ରତିମା ଓଷ୍ଠେ ଦେଲା ଚିଳଚିହ୍ନ ।
ନଦୀସ !
ମୌନଦୃଷ୍ଟି !!

# ପଲ୍ଲୀସଂଜ

ପଲ୍ଲୀପଥେ
ଝରଇ ଯେବେ
ଅସ୍ତରାଗ ରେଖା,
ସଂଜ ତଳେ
ଉଠଇ ଜଳି
ଗୋଧୂଳି-ଦୀପ-ଶିଖା ।

ମନ୍ଦ ବାତ
ବହଇ ଧୀରେ
ଶ୍ୟାମଳ ଘାସେ ଘାସେ;
ମଲ୍ଲୀଫୁଲ
ଫୁଟଇ ଦର
ବିକଚ ହାସେ ହାସେ ।

ସନ୍ଧ୍ୟା-ବଧୂ
ଅରୁଣ ପାଶେ
ଯାଅଇ ଧୀରେ ଚାଲି;
ସୂର୍ଯ୍ୟ ସାଥେ
ଧରଣୀ-ରାଣୀ
ଖେଳଇ ଫଗୁ ହୋଲି ।

ଗଗନ ତଳେ
ବିହଗ ଚଳେ
ବଜାଇ ମଧୁ ବେଣୁ ;
ବତ୍ସା ଧେନ
ବାହୁଡ଼େ ପୁଣ
ସୁଦୂର ପଥ ବେଣୁ ।

ପଲ୍ଲୀବାଳା
କଳସ ଭରି
ବାହୁଡ଼େ ନିଜ ଘରେ;
ସିକ୍ତ ବାସ
ସମୀର ଟାଣି
ଅଳସ ହୋଇପଡ଼େ ।

କାସାରକୂଳେ
କୁମୁଦ କଳି
ଇଷିତ ଗୃହ ହାସେ,
ଇନ୍ଦୁ ପାଇଁ
ରହଇ ଚାହିଁ
ସଲିଳ-ନୀଳ-ବାସେ ।

ସନ୍ଧ୍ୟା ଦୀପ
ରୂପସୀ ଧରି
ଚଉଁରୀ ମୂଳେ ଚଳେ;
ବସନ ତଳେ
ପ୍ରଦୀପ ଶିଖା
ସମୀର ତୁଲେ ଖେଳେ ।

ପାଞ୍ଚ କେତେ
ପତିର ସୁଖ
ଦେବତା ପାଦ ତଳେ
ଦଣ୍ଡବତ
କରି, ତୁଳସୀ-
ମୂଳେ ପ୍ରଦୀପ ଜାଳେ ।

ଶୈଳ ଡେଇଁ
ଆସଇ ଧାଇଁ
ବାଟୋଇ ଦୂର ଗୀତ;
ପଲ୍ଲୀକୋଣେ
ମୁଗ୍‌ଧା ବଧୂ
ଅନାଇ ରହେ ପଥ ।

କ୍ଲାନ୍ତ ରାଗେ
ଚଳଇ ପିକ
ବ୍ୟଥିତ ବନ ଗେହେ,
ଫୁଲ୍ଲେ ଫୁଟେ
ରଜନୀଫୁଲ
ବୃନ୍ତ-ନୀଳ-ଦେହେ ।

ଚକ୍ରବାକ ଧୀରେ—
ଦୀର୍ଘ ନିଶି
ବିରହ ଭୁଞ୍ଜି
ଚଳଇ ଆର ପାରେ ।

---

## ବ୍ରୁନୀ

"ସେଇ ଯେ କରୁଣ ସିକ୍ତ ମଧୁର ବେଳାର,
କଟିଗଲା ତା'ରେ ନଅ ଶର୍ ଅବସର,
ବ୍ୟଥିତ ତିମିର କୋଣେ; ତିକ୍ତ ପରିସ୍ଥିତି;
ଦେଇଗଲା ଜୀବନେ ତା' ସ୍ନିଗ୍ଧ ଅନୁଭୂତି;"
ସେ ତ ତୁମ ପରିତ୍ୟକ୍ତ ଅନୁରାଗୀ;
ଡାକିଯାଏ ବନବୁକେ ନିଶୀଥ-ବିହଗୀ ।

---

ବ୍ରୁନା—ଇଂରେଜ କବି କୀଟ୍‌ସ୍‌ଙ୍କ ପ୍ରଣୟିନୀ

ଆକାଶରେ ଶୁଭ୍ର ଚନ୍ଦ୍ର, ପାଶେ ମୋର ସୁରା,
ଫେରି ମୁଁ ଆସିଛି ଦୂରେ ମୁଗ୍‌ଧ ସଙ୍ଗହରା,
ମୁଖେ ବାଜେ ସୁରା ସ୍ରୋତ ପାନପାତ୍ରେ ଫୁଟି,
ସତେ କି ପାଇବ କହ ତୁମକୁ ଲେଉଟି ?
ଜୀବନ ମୋ ଝରିଆସେ ଝରି ସମ
କି ମୋହ ବା ଦେଇଗଲ ପ୍ରାଣେ ପ୍ରିୟତମ ।

ସେଦିନର ଶିଥିଳିତ ମାଳ ଅପରାହ୍ନେ,
ଉଠିଲା ଜାହାଜ ଧୂମ୍ର ଯେବେ ଗୋ ଗଗନେ,
ସେଇ କ୍ଷୁବ୍ଧ ଶୀର୍ଣ୍ଣ ହାତେ ଲେଖି ଶେଷ ଗାଥା,
ଏ ମୋର ପରାଣେ ସଖି ଦେଇଗଲ ବ୍ୟଥା;
ସେଥିପାଇଁ ତୁମେ ନୁହ ନିନ୍ଦନୀୟ
ପ୍ରୀତି ଯେଣୁ କରିଗଲ ଚିର ସ୍ମରଣୀୟ ।

ଜୀବନର ପଥ ପରେ ଯେତେ ଶତଦଳ,
ମିଶାଏ ମଳୟ ସଙ୍ଗେ ଅଙ୍ଗ ପରିମଳ,
ତାରେ କିଆଁ ସମାଦର ନକର ଅନ୍ତର ?
ତୁମ ସ୍ନେହ ଖୋଜିଲି ଏ ଦଗ୍‌ଧ କଳାକର,
ବୁଝି ତ ପାରିଲ ନାହିଁ କବିହୃଦ
ଦୈହିକ ସମ୍ଭୋଗେ ତାର ନଥିଲା ଅଭାବ ।

ପଶ୍ଚିମର ନୀଳ ନଭେ ରକ୍ତରାଗ ରେଖା,
ସମୁଦ୍ରର ଫେନାକୃତ ଉରସେ ନଉକା,
ଗୋଲାପର ଗନ୍ଧେ ଭୃଙ୍ଗ ନୃତ୍ୟ ମନୋହର,
ନିଭନ୍ତି ପ୍ରଦୀପ ଶିଖା ମେଦୁରିତ ଧାର,
ତାରେ ସିନା ଜାଳଦେବ ବୋଲି ଭାବ
ଡାକଥିଲି ସର୍ବହରା ଦୈନ୍ୟ ଅନୁଭବ ।

ମୋହ ନାହିଁ ଆଜି ତାର ଉଦ୍‌ଭିନ୍ନ ଯୌବନେ,
କ୍ଷଣିକର ଉତ୍ତେଜିତ ଅମୃତ ବଚନେ,
ମାଧ୍ୱୀର ଆଲୋକ ପାତେ ଆଖି ବୁଜି ଧୀରେ,
ଭୁଲିଯିବା ପାଇଁ ଆଉ ନାହିଁ ସ୍ୱପ୍ନପୁରେ,
ଗୃହେଁ ସଖି ପ୍ରଶାନ୍ତର ଅଭିସାର
ଆଜି ଏ ପ୍ରାଣ ନୁହେ ଗୋ ଭୋଗର ସମ୍ଭାର ।

ପ୍ରୀତି-ଘର୍ଥେ ଯେବେ ଥିଲି ପାପ ପରାଭବ,
ପାପର ଆତ୍ମାକୁ ଆଜି କଲି କି ଗୌରବ ?
ଏତେ ଦାନ ଯେବେ ମୋର ଦେଲି ପ୍ରିୟତମା,
ତାରେ ଏ ବସୁଧା ତାକୁ ସୁଷମା ସୁଷମା,
ବିଶ୍ୱ ଆଜି ଦେଉ ଜୟ କରତାଳି
ଗଉରବ ! ଗଉରବ ! ଉଠ ଆନନ୍ଦ ଜାଳି ।

ନିସର୍ଗ ପ୍ରୀତି ତ ନୁହେ କ୍ଷୁଧା ବୃତ୍ତି ପାଇଁ,
ପ୍ରଣୟର ନିର୍ମଳତା ବୁଝିଲ ତ ନାହିଁ,
ସ୍ନେହର ସ୍ୱରୂପେ ଯେବେ ନୁହଁ ଅନୁଭବୀ,
ଭଲ ପାଇ ତୁମରେ ମୁଁ ନିନ୍ଦା କପାଁ ଦେବି,
ଜୀବନ ତ ଗଲା ଉପେକ୍ଷାରେ ଝରି
ସ୍ମୃତି କହେ ଗୃଲ ଆଜି ସ୍ନେହ ସ୍ମରି ସ୍ମରି

ଜାଣିଚ ତ ସଖି ମୁହିଁ ନିଃସ୍ୱ କଳାକର,
ବେଦନାକୁ ବଖାଣିବା ଜୀବନ ବେଭାର,
ଦେଇଗଲ ଆଜି ଯେଉଁ ସ୍ନିଗ୍ଧ ଅନୁଭୂତି,
କାବ୍ୟ ପାଇଁ ସେଇ ମୋର ଅମର ବିଭୂତି,
ଧରିବକ୍ଷେ କବି ଆଜି ହାସ୍ୟାହ୍ଲାଦ
ଜାଣିଶୁଣି ତଥାପି ମୋ ନାହିଁ ଅବସାଦ

ଅପମାନ କ୍ଷୁବ୍ଧ ପୀଡ଼ା ଦେଇଛ ହୃଦୟେ,
ସେ ତ ମୋର ଶୁଭ୍ରହାସ ଅନ୍ତିମ ସମୟେ,
ବିସ୍ମୃତି କ୍ଷୀରାବ୍ଧି ବନେ ସ୍ମୃତିର ଗୋଲାପ,
ଲୋହିତ ଯୌବନ ପୀଠେ ମିଳଶିଖା ଦୀପ ।
ପ୍ରିୟା ଅନାଦର ନୁହେ ଅଗୌରବ
ପର୍ଯ୍ୟୁଷିତ ପୁଷ୍ପର ସେ ସଦ୍ୟ ସଉରଭ

କ୍ଷମ ସଖି କ୍ଷମ ମୋର ଶତ ଅପରାଧ,
ଏ ଜୀବନ-ବେଳା ଚୂଲେ ଢ଼ାଳ ପରମାଦ,
ବୁଝି ତ ପାରିଲ ନାହିଁ ମରମର କଥା,
ତଥାପି ଆହ୍ୱାନ କରେ କ୍ଷୁଣ୍ଣେ ନୋଇଁ ମଥା,
ବୁଭୁକ୍ଷୁ ପରାଣ ମୋର ମାରେ ହାଇ
ମୁହିଁ ତ ଏପାରେ ବ୍ରମ୍ନ ତୁମେ ଯାଇ କାହିଁ ।

ଦୂର ପଥେ ଗୁଡ଼ି ମୁହିଁ ଆସିଚି ତୁମରେ,
ଜୀବନେ ନହେଲା ଥରେ ସ୍ନେହ ପରସ୍ପରେ,
କ୍ଷୟର ଜୀବାଣୁ ଆଜି ଖେଳେ ମୋ ଶରୀରେ,
ଅତୃପ୍ତ ପିପାସା କୁଣ୍ଡେ ସ୍ୱାହାବହ୍ନି ଜଳେ,
ତୁମ ପ୍ରୀତି-ପକ୍ଷୀ ମାରେ ମେଲା ଡେ଼ଣା
ମୃତ୍ୟୁଠାରୁ ସେ ଯେ ସଖି ନିରୁକ୍ତ ବେଦନା ।

ଚାଲିଯାଏ ଆଜି ଦୂରେ ଗୁଡ଼ି ଏ ବସୁଧା,
ପ୍ରତିହତ ଏକ ପାଂଥ ରଖି ହୃଦ ବ୍ୟଥା,
ତା'ର ପାଇଁ ଢ଼ାଳିବେନି କେହି ନେତ୍ର ନୀର,
ପଦେ ପଦେ ଉପେକ୍ଷିତ ବ୍ୟସ୍ତ ସେ ଅଧୀର,
ରଖିଗଲା କାବ୍ୟ-ଜୀବନ-କୁସୁମ
ପ୍ରାଣେ ଯେହ୍ନୁ ଖେଳାଇଚି ସୁରଭି ସୁଷମ ।

"ଜର ନାହିଁ ଅନ୍ୟ କେହି ତାହାରେ ସ୍ମରଣ;
ସେଇ ଯେ ରହିଛି ଫୁଟି କୋରକିତ ପୁଷ୍ପ", × ×
ତା'ର ପାଇଁ ଅଛି ମର ଘନ ଏକ କବି,
ତା'ର ପାଇଁ ଲେଖି ଲେଖି ଶତ କାବ୍ୟ ଛବି;
ତା'ର ପାଇଁ ତନୁ ତାର କରଚ ଅଳ୍ପାୟୁ,
କ୍ଷୟର ରସନା ତଳେ ଛୁଉଚ ତା' ସ୍ନାୟୁ ।

ତା'ର ପାଇଁ ଝରାଇଚ ଲୋହିତ ଲୋତକ,
ତା'ର ପାଇଁ ହରାଇଚ ଜୀବନ ଆଲୋକ,
ତା'ର ପାଇଁ ଖେଳାଇଚ ମନେ ଗୂଢ଼ ରୂପ,
ତା'ର ପାଇଁ ଜଳାଇଚ ବନପ୍ରାନ୍ତେ ଧୂପ,
ନିତି ନିତି ବସି ଲେଖିଚ କବିତା
ପୀରତି ଇନ୍ଧନେ ଜାଳି ଜୀବନର ଚିତା ।

---

## ବିସ୍ମରଣୀ

ଶୁଭେ ନାହିଁ ଘଣ୍ଟାର ନିକ୍ୱଣ—
ସୁପ୍ତ ଏ ନିଦ୍ରାର ତଳେ
ନବ ଉଦଞ୍ଚିତ ଝଟିକା ଛିନ୍ନ
ଦୂର୍ବାସ୍ତରଣ ।

ପ୍ରଭାତର ପଣତ ତଳେ
କୁହେଳିକା ଉଠଇ ଖେଳି
ରୁଦ୍ଧିମନ୍ତ ଶ୍ୟାମଳତ ପଲ୍ଲବେ ପଲ୍ଲବେ;
ଅସ୍ପଷ୍ଟ କୁଟିଳ ପ୍ରଶାଖେ
ପୁଣି ତରୁମୂଳ ବଲ୍‌କଳ ଚଉପାଶେ
ବୁଣିଯାଏ ଲୂତା ଜାଲ ସମ;
ସ୍ନେହ ସ୍ପର୍ଶାପ୍ଳୁତ କର ତଳେ
ବାଜି ଆସେ ଏକ ନିଷ୍ଠୁର ଡାକ
ଅବ୍ୟକ୍ତ, ସେ ଦୂର୍ବାଧ୍ୱନି ପ୍ରଥମ ।

ମନେ ମୋର ନାହିଁ କହୁନାହିଁ ସ୍ମରଣ—
ସବୁ ଆଜ ସବୁ ବିସ୍ମରଣ
ଜ୍ୱଳନ୍ତ ସବୁଜ ସମିଧର ତୀବ୍ର ଓ କୋମଳ
ସୁଗନ୍ଧିତ ଧୂମସମ ।

ଶରାହତ ପକ୍ଷୀ ମୋର
ଛିଡ଼ିପଡ଼େ ଗଗନ କକ୍ଷରୁ
ବିସ୍ତାରିତ ପକ୍ଷେ
ଭୂମି ପରେ;
ଚଞ୍ଚୁ ତାର ମାଗେ ମାଟିର ଜାହ୍ନବୀ;
ଚକ୍ଷୁର ଆକୁଞ୍ଚିତ ପଲକ ତଳେ
ମାରେ ବନବହ୍ନି ଶ୍ୱାସ
ବିସ୍ମୃତିର ଚରମ ନିଃଶ୍ୱାସ ।

ବହ୍ନିଦଗ୍ଧ ଶତଦଳ ପାଖୁଡ଼ାର
ପାଂଶୁଳ ଧୂପ-ଦେହେ
ଶିଶିରର ଏକଟି ଶୀର୍ଣ୍ଣ ଅଶ୍ରୁବିନ୍ଦୁ
ଲଗାଏ ଶିଖା
ଜଳିଉଠେ କ୍ଷୁଦ୍ର ସେ ପ୍ରଦୀପିକା ।

ପ୍ରଭାତ ଏ ଜୀବନର ତପନ
ମଧ୍ୟାହ୍ନ କପୋତ କ୍ରୋଶନ
ହଜିଗଲା ହଜିଗଲା ସେଦିନ
ପ୍ରାଣ ଅନ୍ତରାଳେ

ଉତ୍‌ଥିତ ତପ୍ତ ପବନର
ଚକ୍ରବାତ ଚୂଳେ ।

କିନ୍ତୁ ନାହିଁ ମନେ ତ ସ୍ମରଣ,
ଚୁମ୍ବିତ ଅନୁଭୂତି ମଧ୍ୟେ
ସମାଧିର ମୌନ ପ୍ରସ୍ଫୁରଣ ।

ଉତ୍ତୁଙ୍ଗ ଏ ପାହାଡ଼ର ଚୂଡ଼ା ପରେ
ଶ୍ୱେତ କୁଳାୟକୁ ମେଲି
ଅନାଏ ମୋ ଆଡ଼େ ଅଭାଗା କ୍ରୌଞ୍ଚ ।
ପର୍ଣ୍ଣ ତାର ନିଃଶ୍ୱାସ-ପାଖୁଡ଼ା
ମାଗେ ମୋର ବରଫ ଶଯ୍ୟାରେ
ଶୋଣିତ ଶବର ଏକ ଅଂଶ ।

ଯାହା ଥିଲା ଅସ୍ପଷ୍ଟ ନୃତ୍ୟବତ୍
ତାରେ ମୁହିଁ ଯାଇଚି ତ ଭୁଲି—
ଅହେତୁକେ ଯାଇଚି ସେ ଅଛି
ବନ ଗିରି ଉପତ୍ୟକା ବୁଲି ।

ରହି କି ଯାଇଚି ସତେ ଆସି ଆପଣାର ଛୁଏଁ
ବତାସ କଂପିତ ସେହି
ପକ୍ଷୀଶୂନ୍ୟ ହିମାବୃତ ଗେହେ ।

---

# ନବବର୍ଷର ନାୟିକା

କ ଗୀତଟି ହାୟ ମନେ ଗଲି ଛୁଇଁ
ଧରି ନ ପାରିଲି ତାରେ;
ମାଟିର ବାସନା ବାଜିଲି ଗନ୍ଧେ ମୋର—
କାହିଁ ସେ ଯେ କନ୍ଧ ବରଷିଥିବ ତ ଦୂରେ ।

ଘରେ ଆସି ସେ ଯେ କହିଗଲେ କାନେ
ତୃଣ ପାଇଁ ନାହିଁ ଲୁଣ,
ଜଳଧି ପଠାଇ ଆଣ ।

ଭାବ ଗଲା ମୋର ହଜି କେଉଁ ପଥେ
ମନ୍ ମାରବଲ୍ ସତେ
ଶୁକ ବହଙ୍ଗ ନଭେ ଗଲା ଉଡ଼ି
କୁଳାୟକୁ ଧୋଇ ବାତେ—
ଚଞ୍ଚୁପୁଟରୁ ତା'ର,
ଝରି ପଡ଼ୁଥିଲା ଏ ମୋର ଅଙ୍ଗେ
ଶ୍ୟାମଳ ଚନ୍ଦ୍ରାଧାର ।

ଆସିଚ ତ କାଲି ପତ୍ର ମଣ୍ଡଳୁ
ହାର୍ଦ୍ଦିକ ଫରମାସ,
ଲେଖିବାକୁ ହେବ ଗଳ୍ପ ବା ଗୀତ
ଘରେ ରହି ଉପବାସ ।
ନବ ବର୍ଷର ନବ ସଂଖ୍ୟାରେ
ହେବ ତାହା ପ୍ରକାଶିତ,
କାଶପୁଷ୍ପର ଧଳା ତୂଳିକାରେ
ଶୁଭ୍ର ତା' ଜନନୀତ,

ରଞ୍ଜାଇ ଦେଇ ଆଖି;—
ପିଠୁ ବଠା ପାଇଁ ଚାଲ ଯାଉ ଯାଉ
ଗୃହିଣୀ କହିଲେ ଡାକ,—
“ଦୁଧବାଲା କ୍ଷୀର ଦେଲାନି ତାହାର
ଷାଠିଏ ଦିନର ବାକି,
କହିବଟି ଭଲ ଲୁଆଟି ତା' ପାଇଁ
ରହିବ କେସନ ଠାକ;

ଲାଗିଲାଣି ତାକୁ 'ଶ୍ଳୋକ,
ଘରେ ଆଜି ସବେ ଉପାସ ରହିଲେ
ତମେ କି କବିତା ଲେଖ ।"
ଭାବ ଦେଲା ମତେ ଫାଙ୍କି,
ମନ ମନ୍ଥିଲା ଉଦର ଚିନ୍ତା;
କେସନ ଶୁଝେ ମୁଁ ବାଙ୍କି ?

ମଥାଯାକ ମୋର ହୋଇଗଲା ଆଗି
ନ ଖେଳିଲା ଆଉ ବୁଦ୍ଧି,
କଣ୍ଠତଟକୁ ନୁଣ ଓ ଦୁଧର
ସମାସ ଦେଲାକ ଛନ୍ଦି ।
କି କରିବି ମୁହିଁ ଗିଆନ ହଜିଲା
ଗଲା ତ କବିତା ଲେଖା,
କଆଁରେ ଲଗାଉ ଲଗାଉ ଖସିଲା
ଅଧାପୋଡ଼ା ମୋର ଫିକା ।
ବାହାରିଲି ଧରି ମୁଣି,
କର୍ମଧାରୟ ତତ୍ପୁରୁଷ ଓ
ବହୁବ୍ରୀହି ଆଳୁ କଣି ।

ଏସନ ସମୟେ ସରସୀ ହାବୁଡ଼େ
ପଡ଼ିଗଲି ଚୌକଠେ,
ଉଠିଗଲି ଅଫିସେ ଯାଏ ସେ ଆତୁରେ
ଗଲ୍ପ ଧରି ତା' ହାତେ ।

ନୂଆ ସେ ଗଳ୍ପ  ନୂଆ ଭାବ ପୁଣି
ସବୁ ନୂଆ ନୂଆ ଲୋକ;
ରମେଶ ଯାଇଛ  ବେତାରେ ବଜାଇ
ସେଠି ପୁଣି ହୁଏ ଭେଟ— × ×

ଦୁଇଟି ବର୍ଷ  ଗଲାଣି—ଛଳିଛ
ଜାଡଭୂଆଣର ଠେକ;
ଆସନ୍ତାକାଲି  ପତ୍ରିକାରେ ତ
ଛପିବେ ସମ୍ପାଦକ;
ମନେ ପଡ଼ିଗଲା ମତେ,
ଅଧଲେଖା ମୋର  କବିତାଟି କ'ଣ
ପୂର୍ଣ୍ଣ ହେବନି ସତେ ?

ଅନାବନା କେତେ  କଥା ହେଲୁ ଦୁହେଁ
ସେଇ ଛକେ ଠିଆ ହୋଇ,
ଶାଶୁ ଓ ଶଶୁର  ଦଅର ଭଉଜ—
ଗପ ଗଲା କେତେ କହି,
ସବୁଠୁଁ ତାହାର  ଅଧିକ ସେନେହ
ସାନ ନଣନ୍ଦ ପାଇଁ,
ନୂଆ ତା' ଗଳ୍ପେ  କାହିଁ ସେ ରହିଛ
ଶ୍ରେଷ୍ଠ ନାୟିକା ହୋଇ—
ଏତକ କହି ସେ ମୋତେ,
କୁଞ୍ଚିତ ଚୂର୍ଣ୍ଣ  କେଶ ଦୋହଲାଇ
ଚାଲିଗଲା ରାଜପଥେ ।

ହାଟ ପାଇଁ ଯିବା                    ବାଟ ଦେଖ ହେଲ
ବାରଟା ତ ହେଲ ଆସି,
ପୀଚ୍ ପଥ ପରେ                    ହଣ୍ଡ୍‌ସନ ଗାଡ଼
ସାପ ପରି ଗଲ ଖସି;
ପିଠି ପରେ ତାର                    ସୂର୍ଯ୍ୟ ଝଲସି
ବାଜିଲ କପାଳେ ମୋର
ହାତମୁଣି ଛୁଇ                    ଖେଳୁଥିଲ ଯାଇ
ବୁଲାଚକ ଖାପେ ତାର;
ଗୋଟିଏ କବିତା ଗୋଟିଏ ସେ ଗପ କାହିଁ;
ଗୀତଟିକୁ ଧରି                    ଯାଇଚି ତ ସରି
ଗପଟାକୁ ନେଲ ମୁହିଁ;—
ଆଜ କ ସଉଦା କରେ,
ଗୋଟିଏ କବିତା                    ଗୋଟିଏ ଗପ ସେ
ଡ଼ଗର ପୃଷ୍ଠା ଧରେ ।

ବୈଶାଖ ମଧ୍ୟାହ୍ନ—୧୧
୧୨-୫-୫୬

---

## ସ୍ମରଣର ପଥେ

ଜୀବନର କ୍ଲାନ୍ତ ପଥେ ମନେ ପଡ଼ିଗଲା ଆଜି ସେଇ କଥା,
ଯେଉଁ କ୍ରୀଡ଼ାବକ୍ଷ ଉଭା ଥିଲା ନିତି ନିତି ଲାଜେ ନୋଇଁ ମଥା ।

ନଥିଲା ନବୀନା ସେ ତ, ଥିଲା ପରିଚିତା ଅତିହିଁ ନିକଟ,
ଚିତ୍ତ ଖୋଲି କହି ଯାଉଥିଲା ହୃଦୟର କାହାଣୀ ନିପଟ ।

ଜୀବନର କର୍ମ ସାରି ବାହୁଡ଼ିଇ ଯେବେ ବିବଶ କୁଟୀରେ,
ପ୍ରାଚୀନା ମୋ ଠିଆ ହୁଏ ମୋ ସମ୍ମୁଖେ ଗୃହିଁ ପାଦଶରେ ।

ନିମିଷକ ପାଇଁ ଦେଖିପାରେ ନା ମୋ ମୁଖ କପାଳିଁ ତ ଭଲ,
ଏତେ ଜଣାଶୁଣା ମଧ୍ୟେ ନୂତନତା କାହୁଁ କହ ତ ଆସିଲା ?

କହେ ଯେବେ ହସି ହସି 'କେଉଁ ଅପରାଧ କଲି ତୁମ ଦାସ'—
ମାନସୀ ମୋ ଚିର ଅଭିନବା ହସିଦିଏ ମୁଁହେ ଦେଇ ବାସ ।

ସେଇ ମୋର ଲଜ୍ଜାବତୀ ଚିର ଅଭିମାନୀ ପ୍ରାଣ ଧ୍ରୁବତାରା,
ସ୍ୟମନ୍ତକ ମଣି ନୟନର ଅରୁନ୍ଧତୀ ଜୀବନର ଧାରା ।

ସେଇ, ସେଇ ପ୍ରିୟତମା ତୁମେ ଆଜି ମୋର ପଡ଼ୁଛ ଗୋ ମନେ,
ଯା'ର ପ୍ରୀତିଶିଖା ଏବଯାଏ ଜଳେ ହୃଦେ ଚଳିଶ ଇନ୍ଧନେ ।

କିନ୍ତୁ ସଖି ! ଭୁଲିଯାଏ କ୍ଷଣେ କ୍ଷଣେ ରୂପରସେ ରଚି ଛବି,
ବିଷାଦର ନିବିଡ଼ିତ ଆଲିଙ୍ଗନେ ଲଭେ ସାନ୍ନିଧ ତୋ କବି ।

କାହାର ଦୁଆରେ ସେ ଯେ ନୁହଇ ଭିକ୍ଷୁକ ପ୍ରେମଥଳା ପାତି,
ସ୍ମୃତିପୀଠେ ନିରନ୍ତର ଲେପି ଅଶ୍ରୁଚନ୍ଦ୍ର ଭିଜାଏ ତା ଗ୍ଲାନି ।

ଦିନ ଆସେ ଦିନ ଯାଏ ନଇଁପର ସମ କେତେ କଥା କହି,
ପୁଷ୍ପ ଫୁଟେ, ଚନ୍ଦ୍ର ଉଦେ ତଥାପି ବଞ୍ଚିଛି ଶତ ବ୍ୟଥା ସହି ।

ଏ ଜୀବନ ଅର୍ଦ୍ଧପଥ, ବିରହ ଯେ ଗୁରୁ, କହ କେତେ ବାକି,
କେତେ ଦିନ ଯାଏ ବଞ୍ଚି ରହିବାକୁ ହେବ ମିଳନକୁ ଚାହିଁ ?

ତନୁରେ ତ ଆଉ ନାହିଁ ଯୌବନର କ୍ଷୁଧା ହୋଇଛି ନିଃଶେଷ,
ନିର୍ବାସିତ ପ୍ରାଣେ ତା'ର ଅଛି କିବା କହ ପ୍ରୀତିବିନ୍ଦୁ ଲେଶ !

ଆଉ କେତେ ଦିନ ଯାଏ ରଚିବ ଏ କବି ତୋ ନାମେ କବିତା ?
ଆଉ କେତେ ଦିନ ଗୃହିଁ ସନ୍ଧ୍ୟାକାଶେ ଦେବ ଜାଳି ସ୍ମୃତି ଚିତା ?

କାହିଁକି ଏ ଝଞ୍ଜାଘାତ, ବିଷମ ଜୀବନ କ୍ଷୁଦ୍ର ପଥ ଧାରେ,
ଭଙ୍ଗୁର ଏ ଭବତରଙ୍ଗେ ପୁଣି ମାଡ଼ ସୃଷ୍ଟି କହ କାହା ପାରେ ?

ଯାହା ଘଟିବାକୁ ଥିଲା ଘଟି ତ ଯାଇଚି ସବୁ ଆଜି ଶେଷ,
ତମିରେ ପାଏ କି କେବେ ଶାଶ୍ୱତ ଆଲୋକ ବ୍ୟର୍ଥ ସିନା କ୍ଲେଶ ।

କେତେ ଯେ ସଙ୍ଗୀତ ସେ ଯେ ଗାଇଲାଣି ସଖି ! ତୁମର ଭଣିତେ,
କେତେ ଯେ ଚନ୍ଦ୍ରମା ଚନ୍ଦ ଆଙ୍କିଲାଣି ସଖି ! ବୁକୁର ଶୋଣିତେ;

ତଥାପି ନିର୍ମମ ତୁମେ ବୁଝିନାହଁ ତଳେ ମରମ ବେଦନା,
ସମାଧି ପାଶେ ଢ଼ାଳଇ ନିତି ଅର୍ଘ୍ୟ କହି 'ଏ ପ୍ରାଣ ଯାଚନା' ।

ଆଜି ତା ଚରଣ-କୁଞ୍ଜେ ଉଠିଛୁ ଗୋ ସେଇଁ ବତାସର ଝଡ଼,
ଖଣ୍ଡ ଖଣ୍ଡ ମରିବାଠୁଁ ଆତ୍ମବିସର୍ଜନ ନୁହେଁ କିଛି ବଡ଼ ।

ଗୋଧୂଳି ନକ୍ଷତ୍ର ଆଲୋକେ ଭାସିଯାଉ ତମ ଭୁଲ ସବୁ ସ୍ମୃତି,
ଭବ ପରେ ଆଉ କେତେ ଦିନ ଯାଏ ହେବ ବିକଳ ବଧୂତି ?

ପ୍ରାଣ ଯହିଁ ପରାଭବ ଶରାହତ ହୋଇଅଛି କଲବଲ,
ତହିଁ ଆଉ ନାହିଁ ସଖି ! ଜୀବନ ସନ୍ଧାନ; ମରଣହିଁ ଭଲ ।

ନିଶୀଥ—୧୧
୨-୧୦-୫୧

---

## ଅଂବପାଳୀର ଉକ୍ତି

ଅନୁତାପର ଅଶ୍ରୁ ନୀରେ
ଦିଅ ହେ ଆଜି ଧୋଇ,
ଦିଅ ହେ ଧୋଇ ଜୀବନ ତାର
କଳ୍ମଷ ଦେହ ଛୁଇଁ,
ହୃଦୟ ତଳେ ପାପକୁ ଭରି,
ନୟନେ ବିଷ-ବିଶିଖ ଧରି,
ନେଇଛି ସେହୁ ଲକ୍ଷ ଯୁବା
ପରାଣି ଲହୁ ଦୁଇଁ,
ଅନୁତାପର ଅନଳେ ପଡ଼ି
ଜୀବନ ହୁଏ ଦହି ।

---

ଅଂବପାଳୀ—ବୌଦ୍ଧମତାବଲମ୍ବିନୀ

ପ୍ରଭୁ ହେ ତାରେ ଆଚର କ୍ଷମା
ବାରେକ କହ ଆହା,
ଜୀବନ ସାରା ମତ୍ତ ହୋଇ
ଭୁଲିଛି ପ୍ରାଣ ଗାହା,

ମତ୍ତ ହୋଇ ଭୁଲିଛି ଗୀତ,
ଜୀବନ ତାର ଘୃଣ୍ୟ ଅତି,

ପୀୟୁଷେ ଢାଳି ବିଷମ ବିଷ
ଜାଳିଛି ନିଜ କାୟା,
ପ୍ରଭୁ ହେ ତାକୁ ମୁକ୍ତ କର
ଦେଖାଇ ସ୍ନେହ ଦୟା ।

ବଜ୍ରସମ ବାହୁର ଘାତେ
ମରିଛି କେତେ ଯୁବା,
ତୀକ୍ଷ୍ଣ ତୀର ଦୃଷ୍ଟି ତଳେ
ପଡ଼ିଛି ଢଳି ଅବା,

ଗରଳ ତାର ଅଧର ପିଇ,
ସରଳ ପ୍ରାଣ ଦଗ୍‌ଧ କାହିଁ,

ଆଗ୍ନେୟ ତା' ଉରସପରେ
ଯାଇଛି ଜଳି ଅବା,
ବଜ୍ର ତାର ବାହୁର ଚାପେ
ନିହତ ହୋଇ ଯୁବା ।

କଳୁଷ ସାରା ଆପଣା ଦେହେ
ଲେପିଛି ସୁଧା ଭଳି,
ବଦନେ ତାର ନିଷ୍ଠୀବନ
ଆସିଛି ଅବା ସ୍ରବି,

ଚକ୍ଷୁର ତାର ଛୁଡ଼ଛି କେତେ,
କାମୁକ ଯୁବା ନିଠୁର ହାତେ,

ଚିବୁକ ତାର ଲଭିଛି କ୍ଷତ
ଦନ୍ତଘାର ଦ୍ରବ,
କଳୁଷ ସାରା ତନୁର ତଳେ
ଆସିଛି ଦ୍ରବ ଦ୍ରବ ।

ଅଙ୍ଗନ ତା' ନିଖିଳ ନିଶି
ଯୁବକ ଯାଏ ଦଳି,
ଘାତେ ଝଲସି ଉଠେ କରତଣ
ରୁକ୍ଷ ପାଦ ଧୂଳି,

ଧୂମ୍ର ଲାଭି ପଡ଼ିଛି ସ୍ତୂପ,
ତାମ୍ବୂଳର ଶୁଷ୍କ ଛେପ,

ପଣତ କାନି ବହ୍ନିମୁଖେ
ଯାଇଛି କେତ୍ତୁ ଜଳି,
ଅଙ୍ଗନ ତା' ଦେଇଛି ହାୟ
ନିଠୁର ଯୁବା ଦଳି ।

ଅପର ପାଇଁ ଦେଇଛ ପ୍ରାଣ
କାମ-ଚିତାରେ ଜାଳି,
ଆପଣା ଦେହ ବକ୍ଷ ବାହୁ
ଦେଇଛ ତହିଁ ବଳି;

ଛିନ୍ନ କର ଗଣ୍ଡ ଫଳ,
ଧନର ତୂଳ ମାଂସପଳ,

ଚଷକେ ମଧୂ ବଦଳେ ସେହୁ
ଲହୁ କଳସ ଢାଳି,
ଅପର ପାଇଁ ଅଙ୍ଗ-ଯଷ୍ଟ
ଦେଇଛ ଧୂପେ ବଳି।

ଏଯତେ ଯେ ପାପ କରଇ ନିତି
ଅଭିସାରିକା ହୋଇ,
ନିଶୀଥ ସାରା ପଲକ ତାର
ଥରେ ତ ପଡ଼େ ନାହିଁ,

ଭୋଗିଚ ଯୁବା ଭୋଗିଚ ନର,
ମିଳାଇ ଶତ କରକୁ କର,

ତଥାପି ତାର ଜୀବନେ କାଂଷା
ତୃପ୍ତି ଆସି ନାହିଁ,
ଏତେ ଯେ ପାପ କରଇ ନିତି
ଦୁନିଆ ଧନ ନେଇ।

ଦୁନିଆ ପରେ ଭୁଞ୍ଜି ସେଇ
ମ୍ଳେଚ୍ଛ ଅତି ଆଜ,
ଗର୍ବ ମୋହେ ପଢ଼ିଚ ଦେଖା
ଫାଂଦ ରୂପେ ସାଜ,

ନଜରେ କରି ପ୍ରବଞ୍ଚନ
ହଜାଇ ମନ ଆତ୍ମଜ୍ଞାନ,

ତରୁଣ ଦେହେ ଗ୍ଳଲିଚ ପଥେ
ଗର୍ବେ ଧପ୍‌ଫାବାଜ,
ପଢ଼ିଚ ଲୋଭି କୁଠାର ଘାତେ
ଚିତ୍ତ-ତରୁ ଭାଜି ।

ଲୁପ୍ତଚେତ କ୍ଷିପ୍ତ ସେହୁ
ବିଭ୍ରମ ତା' ମତି,
କର୍ମପଥ ଭରମି ଆଜି
ତାର ଏ ଅଧୋଗତି ।

ତା' ବୁକେ ହାୟ କେତେ ଯେ ବ୍ୟଥା,
ରହିଚ ଛପି ନକହି କଥା,

ମରମ ଭୂଇଁ ଗ୍ଳଂଚ୍ଛି ଆଜି
ଗ୍ଳଲିଚ ପରାଭୂତି,
ଲୁପ୍ତଚେତ କ୍ଷିପ୍ତ ସେହୁ
ବିଭ୍ରମ ତା' ମତି ।

ଆସ ହେ ଆସ ଆଜି ଏ ପ୍ରାତେ
ପରମ ତଥାଗତ,
କୁସ୍ମିତ ଏ ଅଙ୍ଗନେ ତା'
ଚଳାଇ ପାଦ ପୂତ,
ରଖିଛି ସାଜି ଅର୍ଘ୍ୟଥାଳୀ,
ଗୁନ୍ଥି ଯୂଥି-କଳିକା ମାଳି,
ଧୌତ କର ତା' କୁନ୍ତଳ
ପରଶି ଦେବ ପାଦ,
ଆସ ହେ ଦେବ କରୁଣାନିଧି
ଶୁଭ୍ର ତଥାଗତ ।

ଜୀବନେ ହାୟ କରିଛି ସେହୁ
କଠୋର ମହାପାପ,
ସେଇଥିପାଇଁ ଦିଅ ହେ ଭରି
ପରାଣେ ଅନୁତାପ,
ଦଗ୍ଧୀଭୂତ ଶରୀର ଜାଳି,
ଶୋଚନା-ଜଳେ ଦିଅ ପଖାଳି,
କପାଳେ ତାର ବୁଲାଇ ଆଣ
କରୁଣ ଶୁମ ହାତ,
ଜୀବନେ ତାକୁ ଦିଅ ହେ ଆଜି
ବିପୁଳ ଅନୁତାପ ।



୨

ଦେଖାଅ ଆଜି ମୁକ୍ତ ପଥ
ମୁଗ୍ଧ ମୋର ଶିଶୁ,
ଅନ୍ଧକାରେ ଦିବ୍ୟାଲୋକ
ନୟନ ପଥେ ଦିଶୁ,—

ଗୋଟିଏ ଦୀପ ଗୋଟିଏ ଶିଖା,
ସେଇ ତାହାର ଜୀବନ ରେଖା,

ସେଇ ତାହାର ପରାଣ ସଖା
ବନ୍ଧୁ ଗୁରୁ ଶିଶୁ,
ଚରଣେ ତୁମ ଜୀବନ ତା'ର
ପନ୍ଥେ ଯାଉ ମିଶୁ ।

ଊଷା—୬
୧୯-୩-୫୬

# କଣ୍ଠକ୍ୱଣ

'ତୁମରି ଆଗେ ମୋର ଜୀବନ ଯାଉ',
ଏ କଥା ଅନ୍ତରେ,
ବାଜେ ନିରନ୍ତରେ,
ସହି ନପାରେ ଏ ମୋ ଭାଷାର ଦାଉ,
'ତୁମରି ଆଗେ ମୋର ଜୀବନ ଯାଉ' ।

ଶେଷ ବନ୍ଧି ମୁଁ ଶତେ କଲି ବାରଣ,
ପ୍ରାଣେ ଭାବନା' କେବେ,
ଅଶୁଭ କଥା ଲବେ,
କିଶୋରୀ ତୁମେ ସଖି ଅତି ତରୁଣ,
ଶେଷ ବନ୍ଧି ମୁଁ ଶତେ କଲି ବାରଣ ।

ତଥାପି ଅନୁରୋଧ ନମାନ ତଲେ,
କଲ ଗୋ ଉପହାସ,
ମୁଖେ ଫୁଟାଇ ହାସ;
ଉଡ଼ାଇଦେଲ ମୋର କଥା ଯେ ହେଲେ,
ତଥାପି ଅନୁରୋଧ ନ ମାନ ତଲେ ।

ଏଥିକ ଉତ୍ତର କାହିଁ ଗୋ ମୋର ?
ନୀରବ ଖେଦ ସହି,
ଏ ମନ ହୁଏ ଦହି,
ସିଂଧୁ ମଂଥନେ ଉଠେ ଜହର;
ଏଥିକ ଉତ୍ତର ନାହିଁ ଗୋ ମୋର ।

ତୁମ ଭାବନା ନେଲା ଆଜ ସେ ରୂପ,
ହନେହେଲେ ସପନେ,
ଦେଖି ନଥିଲ ପ୍ରାଣେ,
କେ ଦେଲା ଏ ଜୀବନ-ମରଣ ଶାପ,
ତୁମ ଭାବନା ନେଲା ଆଜ ଯେ ରୂପ ।

କରୁଣ କଣ୍ଠର ସିକ୍ତ ଗିର,
ହୃଦୟେ ଅହରହ,
ସୃଜିଲା ଗୋ ବରହ,
ଧୂନାଇ ତୁଟାଇଲା ବୀଣାର ତାର,
କରୁଣ କଣ୍ଠର ସିକ୍ତ ଗିର ।

ଏ କି ତୁମର ହେଲା ପ୍ରଣୟ ଦାନ,
ଯେ ତୁମ ହୃଦେ ପ୍ରାଣ,
କରଲା ଅର୍ପଣ,
ତା' ପ୍ରତି ନୁହେ ଏ କି ନିଠୁର ମାନ,
ଏ କି ତୁମର ହେଲା ପ୍ରଣୟ ଦାନ ।

ଝଞ୍ଜା ଉଠେ ଆଜି ପରାଣ ଦଳି,
ନୟନେ ତୁମ ରୂପ,
ଜଳଇ ଦପଦପ,
ବେଦନାନଳେ ଯାଏ ଜୀବନ ଜଳି,
ଝଞ୍ଜା ଉଠେ ଆଜି ପରାଣ ଦଳି ।

ନତ ମୁଁ ଶୁଣେ ସେଇ କଣ୍ଠକ୍ୱଣ,
ଦୂର କପୋଷ୍ଣ ଗଲେ,
ଏକ ସେ ଭାବ ଚଳେ,
ପରାଣ ତଳେ ମୋର ପ୍ରସ୍ଫୁରଣ,
ନତ ମୁଁ ଶୁଣେ ତୁମ କଣ୍ଠକ୍ୱଣ ।

---



## ସ୍ନେହର ସଜନୀ

ସେଦିନ ପ୍ରତୀଚୀ ଦିଗ୍ କଂକଣେ
ନଇଁ ଆସୁଥିଲା ରବି,
ଗଗନେ ପବନେ ରଂଜାଇ ଗ୍ଲୁ
ଗୋଧୂଳିର ନବ ଛବି ।
ସନ୍ନିକଟର ସହକାର ବନେ
ଗାଉଥିଲା ମୋଦେ ପିକ,
ଗଗନ ପ୍ରାନ୍ତେ ହସି ଉଠୁଥିଲା
ବାଞ୍ଛିତ ଶଶୀ ମୁଖ,—
ଏ ଶୁଭ ସନ୍ଧି କ୍ଷଣେ
ଅଜାଣତେ ମୋର ଥରିଗଲା ତନୁ
ସିତ୍କାର ପ୍ରସାରଣେ ।

ବୁଝି ନ ପାରିଲି ଅବାନ୍ତର ତା—
ଏ କି ସ୍ୱର୍ଗୀୟ ଭବ,
ଭୋଗିନାହିଁ ଅବା ଦେଖିନାହିଁ କେବେ
ସ୍ନିଗ୍ଧ ଏ ଅନୁଭବ;
ନିଭୃତ ମୋର ଅନ୍ତର ତଳେ
ଲାଗିଲା ମଧୁର ବ୍ୟଥା,
ଲବଣୀ କଅଁଳ ଅଦେଖା ହାତଟି
ସାଉଁଳି ଆଣିଲେ ଯଥା,
ବୁଜି ହୋଇଗଲା ଆଖି—
ଖୋଜିବା ପାଇଁ କି ଲୁଚିଗଲା ଆସି
ଅନ୍ତରେ ହୋଇ ଜାକି ?

ଆଖିଡ଼ୋଳା ଆଉ ମନମୂଳ ମୋର
ମିଶିଯାଇ ଏକାଧାରେ,
ଶଂପା ସମାନ ଆଲୋକ ଦେଖାଇ
ବକ୍ଷେ ଟାଣିଲେ କାରେ ।
ଅଜଣା ଅଶୁଣା ଅପରିଚିତ ସେ
ବ୍ରୀଡ଼ାରେ ନଇଁଚ ମଥା,
ଗାଲତଳେ ଆଖି ନମାଇଁ କହିଲା
'କୁହ ଦେବ କୁହ କଥା—
ଅଛୁଟି ପୀରତି ଗଣ,
ଦେବତା ହେ ମୋର ଜୀବନ ଅର୍ଘ୍ୟ
କର ନାହିଁ ଅକାରଣ ।'

ଶାନ୍ତ ଏ ମୋର ମାନସ କାସାର
ଚହଲି ଗଲା ଗୋ ସୁଖେ,
ସରମ ଅଧର ମରମେ ଲଗାଇ
ଫୁଂକ ଦେବାରୁ ବୁକେ;
ନୟନ ପଲକେ ବୁଲାଇ ଦେଲ ଗୋ
ନବପଲ୍ଲବ କର,
ଅଙ୍ଗୁଳି ଖିରେ ଅନ୍ତରେ ମୋର
ଆଙ୍କିଲି ଛବି କାର;
ଭସାଇଦେଲ ମୋ ତରୀ—
କୌଣସି ସେଇ ସପନ ସାଇତେ
ମଙ୍ଗଚି ମାରି ମାରି ।

ତରୀ ମୋର ଗଲା ଭାସି ଅନନ୍ତେ
ନ କହିଲ ପଦେ କଥା,
ଯୁଗ ପରିଚିତ ମଧ୍ୟେ ବା କାହୁଁ
ଆସିଲା ଏ ନୀରବତା ?
ନବଢ଼ ପୀରତି ଭରି ବରଚିଲ
ଅଭିନବ ମୂର୍ଚ୍ଛନା,
ବକଶି ଉଠିଲା ସୁପ୍ତିତ ଶତ
ଶତାବ୍ଦୀ ଉପାସନା;
ଥରିଗଲା ମନ ପ୍ରାଣ,
ନୟନ ପ୍ରାନ୍ତେ କେବେଲା ଗୋ ବୋଳି
ସୁଶୀତଳ ଅଞ୍ଜନ ।

ବଂଶୀଟି ଧରି    ବିହ୍ୱଳ କୁମାରୀ
କି ଗୀତ ଗାଇବ ଆଜି,
ସବୁ ନୂଆ ନୂଆ    ରାଗ ବିନ୍ୟାସ
ମନରେ ଯାଉଛି ବାଜି;
ଗୋଟି ପରେ ଗୋଟି    ଥରଇ ଅଧରେ
ମୁରଲୀ ନ କହେ କଥା,
ଉଚ୍ଛ୍ୱାସ ଘାରେ    ପଦ୍ମପାଖୁଡ଼ା
ବୁଜି ହୋଇଆସେ ଯଥା;
ଅଖଣ୍ଡ ଆକୁଳତା—
ଅସରନ୍ତି ଏ    ହୃଦୟ-ଉତ୍ସ
ମରମ ଉଛୁଳା ବ୍ୟଥା ।

ପ୍ରୀତି ବନ୍ଧନମଧ୍ୟେ    ଶୋକ ଭୋଗିବାକୁ
କହ ଏ କି ପ୍ରତିଦାନ,
ଏ ଜୀବନ ପାଇଁ    ଅଛି କେତେ ତୁମ
ଅନ୍ତରେ ଅଭିମାନ ?
ମନ ବିହଂଗୀ    ପ୍ରବାଳ ଅଙ୍ଗେ
ଖଞ୍ଜି ଦେଇଣ ତାର,
ଅଙ୍ଗୁଳି ଗୁଳି    ବାଇବା ପାଇଁ ଗୋ
କାହିଁ ଏଡ଼େ ନିଷ୍ଠୁର ?
ଲେଖି ପୁଣି ସ୍ୱରଲିପି—
କଣ୍ଠ ତ ତୁମ    ଗାଏ ନାହିଁ ଗୀତ
କାହିଁ ସେ ପାଣ୍ଡୁଲିପି ?

ନିତି ନିତି ଚାଲି ଅନ୍ତର-ପଥେ
ଫୁଟାଇ କାବ୍ୟ-ଫୁଲ,
ଏ ମୋର ମାନସ- ବଲ୍ଲୀ ଦୋଳିରେ
ଦ୍ରାକ୍ଷା ସମ ଯେ ଝୁଲ ।
ହୃଅନା ଗୋ ସଖି ନିଷ୍ଠୁର ଆଉ
ଅନାଅ ଅନାଅ ଥରେ,
ତୁମରି ନୀରବ କଟାକ୍ଷ ତଳେ
ଜୀବନ ଯେ ମୋର ମରେ,
ସେଇ ସେଇ ଅଭିସାରେ—
ତୁମ ପାଇଁ ମୁଁ ଯେ ନିତି ପଥେ ବସି
କେତେ କଳ୍ପନା କରେ ।

ତୁମେ ଚାଲିଯାଅ ହସି ହସି ପ୍ରିୟେ
ମୁଖେ ଅଞ୍ଚଳ ଦେଇ,
ମୁଁ ଯେ କଳ୍ପନା କରଇ ଗୋ ତବ
ପଦଚିହ୍ନକୁ ନେଇ;
ତୁମେ ଚାଲିଯାଅ ଗନ୍ଧର କୁସୁମ
ହସ୍ତରେ ଦଳି ଦଳି,
ମୁଁ ଯେ ପାଏ ତାର ମୁଗ୍ଧ ବାସନା
ଅନ୍ତର ତଳ ଭରି;
ତୁମେ ଚାଲିଯାଅ ସଖି,
ମୁଁ ଯେ ରଞ୍ଜିତ ରୂପରସେ କରେ
ଦୁଇଟି ତୃଷିତ ଆଖି ।

କୁସମ ଗୁଳଯାଏ ସଖୀ ସଗତେ
କ କଥା ତା' କାନେ କହ୍ନ,
ମୁଁ ଯେ ବସୁରଇ ମୁଗ୍ଧ ଭ୍ରମର
ଚନ୍ଦ୍ର-ପାଖୁଡ଼ା ଫେଇ;—
ସତେ କବା ହୁଅ ଭ୍ରମର ଓ ମୋର
ପ୍ରୀତି-କାବ୍ୟକୁ ନେଇ,
ଅନ୍ତରେ ମୋର ଆଡ଼ଇ ତାହାର
ମୌନ ସୁରଭ ବାହ୍ନ—
ମନମୂଳ ଉଠେ ଥର,
ହୃଦ-ଅଙ୍ଗନେ ଉଦ୍ଭହୁଅ ଆସି
ଅର୍ଘ୍ୟଥାଳକି ଧର ।

---

# କବି ଓ କପୋତୀ

ଆଷାଢ଼ର ଆଦ୍ୟ ବାରିପାତେ
ଭିଡ଼ି ମୁହିଁ ପ୍ରାଭାତିକ ଲଗ୍ନ,
ଜୀର୍ଣ୍ଣ ଜରି ତଳ୍ପପରେ ଶୋଇ
ଚିତ୍ତକଲି ଶାନ୍ତ ନିବେଶନ;
ମୁକୁଳିତ ବାତାୟନ ବୁଜି
ନୟନ ମୁଁ ମୁଦିଲି ସଧୀରେ,
କି ଗୀତଟି ଲେଖିବି ମୁଁ ବୋଲି
କଲପନା କଲି ସ୍ନେହାତୁରେ।
ମନେ ମୋର ବାଜିଲା ତ ନାହିଁ
କେଉଁ ଗୀତ ଅବା କେଉଁ ସୁର,
ଏ ନୟନ ଢୁଳିଗଲା କାହିଁ
ଛୁଇଁ ସେ ଯେ ଅଜ୍ଞାତର ଦୂର।

କେତେ ଅବା ଯତନ ମୁଁ କଲି
ଶତ ଛବି ଆଙ୍କି ମନ-ପଟେ,
ତଥାପି ସେ ଥକିଗଲି କାହିଁ
ଝର ଯଥା ସ୍ନିଗ୍ଧ ମରୁପଥେ ।
ଅବରୁଦ୍ଧ ବାତାୟନ ଛିଦ୍ରେ
ଦେଖିଲି ମୁଁ ଶତଚକ୍ଷୁ ଲିପି,
ବନ୍ଧୁ ପରି ଅଟ୍ଟହାସେ ସେ ଯେ
କି କଥାଟି କହେ ଛପି ଛପି ।

ଗୁହୁଁ ଗୁହୁଁ ମଥା ପରେ ମୋର
ଖୌଞ୍ଜ ଗଲି ଆକାଶେ ଚହିଁର,
କଳପନା ପରେ କଳପନା
ଗଲି ଛୁଇଁ ପାଟଳିମ ଧର ।
ମାନସର ଆରସୀ-ସଲିଳେ
ଗୁହିଁଲି ମୁଁ ଆପଣାର ମୁଖେ,
ଶତ ଶତ ମୁଗ୍ଧ ରୂପ କାହିଁ
ଦେଖିଲି ମୁଁ ନିଜ ରୂପ ପାଖେ ।

ସ୍ୱ ବୋଲି ତ କିଛି ନାହିଁ ମୋର
ସବୁ ଖାଲି ଅପରର ପୁଣି,
ବୃକ୍ଷତଳେ ଉଡ଼ିଗଲି କେତେ
ପୁଷ୍ପରଜ ପବନରେ ଘୁଣି ।

ଢେଉ ପରେ ଢେଉ ଗଲା ମାରି
ସମୁଦ୍ରର ସଇକତ ପରେ,
ଜୀବନର ଯୌବନ-ମୁକୁଳ
ଥରିଲା ମୋ ଜୀର୍ଣ୍ଣ ମନ-ଡାଳେ ।

କିଛୁ ମୁହିଁ ପାରିଲିନି ବୁଝି,
ଶ୍ରାବଣର ଝଡ଼େ ଗଲା ଫୁଟି,
ହଜିଗଲା ଶତ ସ୍ୱପ୍ନ ଊର୍ମି
ଜୀବନରେ ରହିଗଲା ତ୍ରୁଟି ।
ତଥାପି 'ତ ପାରିଲିନି ଲେଖି
ସବୁ ଖାଲି ଝରିଗଲା ନଭେ,
କର୍ଣ୍ଣପଥେ କେଉଁ ସେ ସୁଦୂର
କପୋତୀର ଡାକ ଆଜି ଶୁଭେ ।
ପୂର୍ଣ୍ଣ ହେଲା ନାହିଁ ମୋ ସାଧନା—
ମନେ ହୁଏ କପୋତୀର କଣ୍ଠେ
ରହିଗଲା ଖାଲି ମୋ କଳ୍ପନା ।

---

# ସୃଷ୍ଟି ଓ ସ୍ରଷ୍ଟା

ତମେ ପୁଣି ରାଜ ବିଶ୍ୱ ପ୍ରତି ରନ୍ଧ୍ରେ ରନ୍ଧ୍ରେ,
    ଜଳ ସ୍ଥଳେ ଜୀବ ଜଡ଼େ ଗଗନ ପବନେ;
ତୁମର ମୁରଲୀ ପୁଣି ବାଜେ ମନ୍ଦ୍ରେ ମନ୍ଦ୍ରେ,
    କିନ୍ତୁ ତବେ କାହିଁ କେହି ନପକାନ୍ତି ମନେ ?

ତୁମେ ପୁଣି ଆପ ପିଣ୍ଡ ନିଖିଳ ଜୀବନେ,
    ବାଣ୍ଟି ବାଣ୍ଟି ଗଣି ଗଣି ପ୍ରପଞ୍ଚ ସୃଜନେ,
ଭିଆଇଛ ଯେବେ ସୃଷ୍ଟି ବିପୁଳ ଯତନେ,
    ନପୂଜନ୍ତି ତେବେ କାହିଁ ତୁମର ଚରଣେ ?

ତେଣୁ ଏଇ ଭବ ପାଇଁ ନୁହଁ ତୁମେ ସ୍ରଷ୍ଟା,
ଫିଙ୍ଗ ସେଇ ଚନ୍ଦକାଠି, ଫିଙ୍ଗ ସେଇ ବେଣୁ,
ବିପୁଳ ସୃଜନ ବ୍ୟର୍ଥ ଯିବା ଆହେ ଦ୍ରଷ୍ଟା,
ତୁମ ସ୍ପର୍ଶେ ଆଉ କଥା ନକହେ ତ ରେଣୁ ।

ବୁଝି ମୁଁ ନପାରେ ତବ ସୃଜନର ଶକ୍ତି
ଶୁକ୍ତିରେ ମୁକ୍ତା ବା ତୁମେ ମୁକ୍ତା ମଧ୍ୟେ ଶୁକ୍ତି ।

ପ୍ରାତ—୭
୩୧-୧୦-୪୧

---

—ନିବେଦତା—

ମହୀତଳ ମାପଦଣ୍ଡ ପରି ଅବସ୍ଥିତ,
ପ୍ରାଚୀ ପ୍ରତୀଚୀ ଉଦଧି ମରେ ଅନ୍ତର୍ହିତ ।

ଅତ୍ୟୁତ୍ତରେ ଦେବାତ୍ମଜ ଶୁଭ୍ର ହିମାଳୟ,
ଶଇଳମଣ ମହାଧିପ ବହୁ ଜୀବାଶ୍ରୟ ।

ସକଳ ରତ୍ନର ଖଣି ଲୋକେ ଗିରିବର,
ହିମ ନିକେତନ ବୋଲି ନାହିଁ ଅନାଦର ।

ପରିପୂର୍ଣ୍ଣ ସୁଧାକର ଯେହ୍ନେ ପ୍ରପୂଜିତ,
ଶ୍ୟାମାପ୍ଲିତ ପଂକରସେ ହେଲେହେଁ ଦୂଷିତ ।

ତେସନ ତୁଂଗ ନଧର ହିମ ହିମାଚଳ,
ସିଦ୍ଧବର ମନୋରଥ ଆଧାର ସକଳ ।

ଅପ୍‌ସରାଗଣ ପ୍ରମୋଦେ ତହିଁ ଯାନ୍ତି ଚଳି,
ସିନ୍ଦୂର ତିଳକ ଗେରୁ କସ୍ତୂରିକା ବୋଳି ।

ଦିବାନିଶି କଉଶିକେ ଗୁହା ଅନ୍ତରାଳେ,
ସତତ ଆଶ୍ରୟ ଦେଇ ସ୍ନେହେ ପ୍ରତିପାଳେ ।

ତୃଣବତ କ୍ଷୁଦ୍ରକନା ଶରଣାଗତର,
ରକ୍ଷକ-ମମତାଧାର ସାଧୁତା ସୁନ୍ଦର ।

ତ୍ରସ୍ତ ବହ୍ଲଳିତ ଶଙ୍କେ ଛପି ତରୁକ୍ରୋଡେ,
ଶ୍ୟାମ ନିବଡ଼ ବନାନୀ ଭୂମିକାର ପଟେ ।

ଶବର ଯୁବକ ପୃଷ୍ଠେ ବନ୍ଧି ଶରାସନ,
କେଶରୀ ପଦାଂକ କରେ ତହିଁ ଅନ୍ୱେଷଣ ।

ସୁଗନ୍ଧ ଶୀତଳ ବାତେ ହରି ପରିଶ୍ରମ,
ସୁରଭିତ ଜଳେ ତୋଷି ମାନସ-ସମ୍ଭ୍ରମ ।

କସ୍ତୂରିକା-ମୃଗବାଳ-ବ୍ୟଜନ ଆଳଟି,
ସ୍ଥୁଲ ପୁଣ୍ଡରୀକ ଛତ୍ର ଗୁରୁ ପରିପାଟି ।

ଶୀତଳ ଲତିକା କୁଞ୍ଜେ ରଚି ପ୍ରୀତିଲୀଳା,
ସଙ୍ଗେ ଶ୍ୟାମ ଶବରଣୀ ନୃତ୍ୟ-ପରିଶୀଳା ।

କଂଠ ତଟେ ଛଂଦି ଭୁଜ-ରଜତ-ନିଗାଳ,
ଲସିତ ଅମ୍ବୁଜ ଯେହ୍ନେ ଆସନ-ମୃଣାଳ ।

ରତ୍ନଶୋଭୀ ଶୃଂଗାବଳୀ ମୁକୁଟ ଉତ୍ତୀର୍ଣ୍ଣ,
ଦୁକୂଳ-ମଂଜୁ-କଂଚୁକ ଭୂଷାର ବିସ୍ତୀର୍ଣ୍ଣ ।

ଯହିଁ ଯଜ୍ଞୋପକରଣ ଦେଖି ପଦ୍ମାସନ,
ଗିରିରାଜଙ୍କୁ ପ୍ରଦାନ କଲେ ତୁଷ୍ଟମନ ।
ପିତୃ-ମାନସିକ କନ୍ୟା-ମେନା ଗୁଣନିଧି,
ଧୁରଂଧର ସୁତ ଜାତ କଲେ ଶକ୍ତି ସିଦ୍ଧି ।
ମୈନାକ ନାମ ପ୍ରଦତ୍ତ ହେଲା ଶିଶୁବରେ,
ବଜ୍ରାଂକୁଶ ଅଂଗ-ଫଲେ ସ୍ପର୍ଶି ନାହିଁପାରେ ।
ଯେଣୁ ସେ ରତନାକର ଅତି ପ୍ରିୟଂକର,
ରାମଦୂତ ସେବା କାର୍ଯ୍ୟେ ଥିଲେ ତତପର ।
ପରେ ଗିରିବର ଜାତ କଲେକ ନଂଦିନୀ,
ବିଶ୍ୱବଂଦ୍ୟା ଅପରୂପ ତ୍ରିଲୋକ ମୋହିନୀ ।
ଇତି ପୂର୍ବେ ଦକ୍ଷ କନ୍ୟା ରୂପେ ଅବତରି,
ଶିବ ଚିତ୍ତ ଥିଲେ ରଂଜି ସତୀ-ଅଭିସାରୀ ।
ପତି ଅଂକ ସୁଶୋଭିତ ଉଷା-ପଦ୍ମ ବ୍ରୀଡ଼ା,
ନୀଳ ଅମ୍ବୁଦ ଉତ୍ସଂଗେ ଚପଳାର କ୍ରୀଡ଼ା ।
ପରସ୍ପର ବିନିମୟେ ହର-ଗୌରୀ ବେନି,
ହୃଦ-ସଂପୁଟେ ଅଗାଧ ପ୍ରୀତି-ଫଲ୍ଗୁ ଘେନି ।
ସ୍ନେହ-ସୌଧ ଥିଲେ ରଚି ଆସିଲା ଆହ୍ୱାନ,
ଦକ୍ଷରାଜା ଯଜ୍ଞ ବିଧି କରେ ଆୟୋଜନ ।

ପିତା ନିମନ୍ତ୍ରଣେ ଗଲେ ସତୀ-ପ୍ରିୟତର,
ମହାର୍ଘ୍ୟ ପୂଜା ସଂଭାର ଗୃହୁ ଉପଗୃହ ।

ଉତ୍ସବର ପଟୁଆର ଯାଏ ପଥାଂତରେ,
ବନ୍ଧୁ ସମାଗତ ମଧ୍ୟେ ଯାଏ ଯଜ୍ଞାଗାର ।
ଯଜ୍ଞେ ଦେଖି ସତୀ-ସାଧ୍ଵୀ ପତି ଅନାଦର,
ତେଜିଲେ ପରାଣ ତହିଁ ବିଷଣ୍ଣ କାତର ।

ସେଇଦିନୁ ଅପତ୍ନୀକ ଶିବ ଶୋକାସନ୍ନେ,
ତପସ୍ୟା ଥିଲେ ରତ ଶୈଳଶିଖାସନେ ।
ଶୀତ ମାରେ ଯଥା ମଗ୍ନ କଂଜ ଅଭିଜ୍ଞାନ,
ତେମନ ଶରୀର ଶୋଭା ଯାଏ ଶୋଭମାନ ।
ତହୁଁ ସତୀ ନାମାଂତରେ ଉମା ରୂପ ଧରି,
ସଖୀ ସହ ବାଲ୍ୟଲୀଳା ମୋଦେ ଶେଷ କରି ।
ସେହିକାଲେ ଭୂଧର ଚୂଡ଼େ ସୁରେଶ ଶଂକର,
ଶିବ-ପାଶ ଅନୁମତି ଦେଇ ପିତାଂକର ।
ଗିରିଶୃଂଗେ ଲଜ୍ଜାବତୀ ଗମି ଧୀମଂଥରେ,
ତପସ୍ବୀର୍ଯ୍ୟ ପୂଜାଅର୍ଘ୍ୟ ଦେଲେ ସ୍ନେହଭରେ ।
କ୍ରମେ ଆତଯାତ ହେଲା ନିବିଡ଼ ଆତୁର,
ଚିତ୍ତ-ତରୁ-ଡାଳ ଧରେ ପ୍ରଣୟ-ଅଂକୁର ।
ଶିବ-ତପସ୍ୟା-ସମ୍ଭାର କୁଶ ପୁଷ୍ପଦଳ,
ଯୋଗାନ୍ତି ନିତ୍ୟ କୁମାରୀ ବହି ଭକ୍ତିହେଳ ।
ଏହି ସମୟେ ତାରକା ନାମେ ଦୈତ୍ୟ ଭ୍ରଷ୍ଟ,
ସଂଗ୍ରାମେ ଜିତି ଅମରେ ସ୍ଵର୍ଗ କଲା ନଷ୍ଟ ।

ଉପାୟ ନଦେଖି ତହୁଁ ପୁରଂଦର ଧୀର,
ବିରଂଚି ସହିତ ଯୁକ୍ତି କଲେ ମନ ସ୍ଥିର ।
ମଦନ ଦେବରେ ତହୁଁ କଲେକ ସ୍ମରଣ,
ଇଂଦ୍ରପାଶେ ପ୍ରବେଶିଲେ ଯାଇ ନିମନ୍ତ୍ରଣ ।
ବସାଇ ପାରୁଶ ପୀଠେ ନିଜ ସିଂହାସନେ,
ପୃଷ୍ଠେ ଦେଇ କରକଂଜ ତୋଷିତ ବଚନେ ।
ଭାଷିଲେ ମଦନ ସଖେ ! ସୁରକାର୍ଯ୍ୟ କର,
ସଂତୋଷଭାଜନ ହେବ ତିନି ଭୁବନର ।

ବାସବ ମିଷ୍ଟ ବଚନେ ସ୍ମର ତୁଷ୍ଟମନ,
କହିଲେ ହେ ଦେବରାଜ ! ଅମରପ୍ରଧାନ ।
ଅଛି କିବା ତୁମ ଇଚ୍ଛା କେଉଁ ପତିବ୍ରତା,-
ରମଣୀ ସଂଭୋଗେ ଅବା କେଉଁ ସେ ଦେବତା,-
ଗଣେ କଉଣସି ଦୁଷ୍ଟ ପୀଡ଼ଇ ନିରତେ,
ଆଦେଶଂତୁ ଇଷ୍ଟସିଦ୍ଧି କରିବି ତ୍ୱରିତେ ।

ଶୁଣି ଶଚୀପତି ତାହା ଚିତ୍ତେ ବହୁ ହର୍ଷ,
ମୁଖ ହେଲା ସୁପ୍ରସନ୍ନ ଯେସନ ସାରସ ।
ଭାଷିଲେ ମିତ୍ର ପ୍ରବର ତୁମେ ଥାଉଁ ଥାଉଁ,
ଆତ୍ମୀୟ ସୋଦର ମୋର ଅଛି କେ ବା ଆଉ ?
ଶଂକର ତନୟ ଲୋଡ଼ା ତାରକ ସଂହାରେ,
ବ୍ରହ୍ମଚର୍ଯ୍ୟ ଶିବ ଯାଇ ତପେ ଶୈଳାଗାରେ ।

ତୁମେହିଁ ପାରଗ ଶିବ-ଗଉରୀ ମିଳନେ,
ଶିବ ସେବା କରେ ଉମା ଗିରି-ତପୋବନେ ।

ଶୁଣି ପୁରଂଦର ବାକ୍ୟ ବସନ୍ତ ବଦନ,
ସ୍ମର କହିଲେ ଚଂତିତରେ ପାଳିବି ବଚନ ।
ମନସିଜ ଗଲେ ତହୁଁ ଧରି ଧନୁଶର,
ସଂଗତେ ସୁଂଦରୀ ତନ୍ୱୀ ରତି ପ୍ରିୟତର ।
ହିମାଳୟ ପାଦଦେଶେ ପ୍ରବେଶଂତି ଚଳି,–
ଅକାଳ ବସଂତକାଳ ଗଲି ଉତୁରିଳ ।
ତରୁଲତା ପରିବେଷ୍ଟ ଗିରୀଶ ଆଶ୍ରମେ,
ଶୁକ ପିକ ରଟେ କେଳି ଚକିତ ବିଭ୍ରମେ ।
ଅଂଗତଟ କଣ୍ଡୂୟନେ ହେଲେ ମୃଗରତି,
ପଶୁପକ୍ଷୀ ଯୁତସାରି ମୈଥୁନ ଉଷତ ।
ଆଶ୍ରମ-କୁଟୀ-ଦୁଆରେ ନଂଦୀ ଗଣପତି,
ନିଷେଧ ଆଦେଶ ଦେଲେ ବହି କ୍ରୋଧ ଅତି ।
ସଂଗେ ସଂଗେ ଚିତ୍ରାର୍ପିତ ପ୍ରାୟେ ଜୀବରାଜି,
ବିକଳଭାବରେ ରହିଲେ ବିକୃତି ବରଜି ।
ରତି ସହଚର କାମ ପଶି ଉପବନେ,
ପାଦପ ଉହାଡ଼େ ଲୁଚି ଭୀତତ୍ରସ୍ତ ମନେ ।
ଶିବ-ଦୂର-ପୃଷ୍ଠ-ଦେଶେ ଅତି ସଂଗୋପନେ,
ଶରାସନେ ତୀକ୍ଷ୍ଣ ଶର ଯୋଚି ସଯତନେ;

ଦୁଇତିନ ବାର କଲା କାର୍ମୁକ ଟଂକାର,-
ସାଜ ସାପ୍ଟକ ରଖିଲା ବାଂଧିବ ଏଥର ।

ଏ ସମୟେ ଶିବପାଶେ ପ୍ରବେଶି ପାର୍ବତୀ,
ପଦ୍ମାନନୀ ସୁପ୍ରସନ୍ନ ମୁଖ ଲଜେ ପୋତି ।
ବଢ଼ାଇଲେ କରପୁଟେ ପଙ୍କଜର ମାଳ,
ମନ୍ମଥ ଏ ଯୁକ୍ତ ଯୋଗେ ପାଇ ଅବସର ।
ସମ୍ମୋହନ ଶରେ ଯୋଖା କରି ଧନୁଧାରେ,
ଶଂକର ଦେହେ ବାଂଧିଲା ସଯତନ ଭରେ ।
ଅଂଗତଟେ ଗଲା ଖେଳି ଶୀତ୍କାର ତଡ଼ିତ,
ସେକ୍ଷଣି ଶଂକର ଚକ୍ଷୁ ହେଲା ଉନ୍ମୀଳିତ ।
ପୁରୋଭାଗେ ଉମା ସତୀ ମୁଖ ପଦ୍ମଜିତ,
ବ୍ରୀଡ଼ା ଭରେ ଆସ୍ୟ ଗୁରୁ ଅଧର ଲସିତ ।
ଗଲା ଖେଳି ଶିବନେତ୍ର ବିହ୍ୱଳତେ ବାରେ,
ଗିରୀଂଦ୍ର ନଂଦିନୀ ଅଂଗ-ପ୍ରତ୍ୟଂଗ-ଲତାରେ ।
ଶଂକର ସଂଯମ ବଳେ ନିରୋଧି ମାନସ,
ଫେରାଇ ଆଣିଲେ ଚକ୍ଷୁ ଧବଳ-ସାରସ ।
କରଣେ ଅନୁସଂଧାନ ଚାଂଚଲ୍ୟ କାରଣ,
ପକାଇଲେ ଚକ୍ଷୁଦ୍ୱୟ ଚରଚମେ ବହନ ।
ଉଭା କଂଦର୍ପ ରୁଚିର ବିଷମ ଆଶୁଗ,
ଧରି ସଂମୋହନ ଯୋଗୁ କୁସୁମ-କାର୍ମୁକ ।

କୋପେ ହୋଇ ଥରହର ତୃତୀୟ ନୟନ,
ମେଲିଲେ ତହିଁରୁ ହେଲା ଅନଳ ଉତ୍ଥାନ ।
ସେକାଳେ ଡାକିଲେ ସୁରେ ସ୍ୱରବେଗେ କାତର,
ପ୍ରଭୋ ! ଶାନ୍ତ ହୁଅ ଆଜ ପ୍ରକୋପ ନ କର ।
ଏ ବଚନ ହରକର୍ଣ୍ଣ ନୋହୁଣୁ ଗୋଚର,
ଅବିଳମ୍ବେ ଭସ୍ମୀଭୂତ ହେଲା ରତିବର ।

ସଗଣ ଶିବ ସେଠାରୁ ହେଲେ ଅନ୍ତର୍ହିତ,
ରତି ବିଳପିଲା ଉଚ୍ଚେ ହୋଇ ବିକଳିତ ।
କେଶ ବାସ ଅସମ୍ଭାଳ ଧୂଳି ଧୂସରିତା,
କରୁଥିଲା ଉର ଶିର ଲୋତକ ପୂରିତା ।
ଭୟେ ବିହ୍ୱଳ ଚେତନା ଗିରୀନ୍ଦ୍ର ନନ୍ଦନୀ,
ସଖୀ ପାଶେ ଦୀର୍ଘଶ୍ୱାସ ତେଜେ ଉଦାସିନୀ ।
ଶୁଣି ହିମାଳୟ ତହିଁ ହୋଇ ପରବେଶ,
କୋଳ କରି ତନୟାରେ ନେଲେ ଗୃହ ଦେଶ ।
ଏହାପରେ କିଛି କାଳ ଅନ୍ତେ ହୈମବତୀ,
ଶିବ ଲାଭ ବିନା ଦେହ ମନ ଶୂନ୍ୟ ଅତି ।
ଧନ ସମ୍ପଦ ଯୌବନ ମଣିଲେ ସେ ତୁଚ୍ଛର,
ଭବ ବିନା ବ୍ୟର୍ଥ ସିନା ଜୀବନ ନିକର ।

ଏତେ ବିଚାରି ଗିରିଜା ସଜନୀ ସଙ୍ଗତ,
ପିତା ମାତାରେ ନ କହି ଗମିଲେ ବନାନ୍ତ ।

ଶରୀରୁ ତେଜି ମହାର୍ଘ ରତନ ଭୂଷଣ,
ଲେପିଲେ ଭସ୍ମ ମୃତ୍ତିକା ମୃଦୁ ଅଙ୍ଗଘନ ।
ବଳ୍କଳ କଲେ ଧାରଣ ତେଜି କ୍ଷୌମବସ୍ତ୍ର,
ସ୍ୱର୍ଣ୍ଣ ଅଙ୍ଗୁରୀୟ ସ୍ଥଳେ ମୁଦ୍ରିକା ଦର୍ଭର ।
ତୂଳୀତଳ୍ପ ଶଯ୍ୟା ତେଜି ଶୋଇଲେ ଭୂତଳେ,
ପର୍ଣ୍ଣ କଲେ ବ୍ୟବହାର ସ୍ୱର୍ଣ୍ଣପାତ୍ର ସ୍ଥଳେ ।
ଆଣିଲେ ନୟନ ଜଳ ନଳେ ହୈମବର୍ଣ୍ଣ,
ନିରତ ନୟନେ ହେଲେ ନିସ୍ତାପର ବ୍ରଣ ।
କ୍ଷୁନ୍ନ କଲେ ଅନ୍ନଜଳ କ୍ରମରେ ଆହାର,
ବେଳୁବେଳ କ୍ଷୀଣତର ଲତା-କଳେବର ।
ପ୍ରଚଣ୍ଡ ପଂଚାଗ୍ନି ତାପ ସାଧିଲେ ଗ୍ରୀଷ୍ମେ,
ନେତ୍ର ଶୋଭେ ଉଷାରବି ବିମ୍ବ ଯଥା ରମେ ।
ଚକ୍ଷୁରେଖା ଧାରେ ବୃଦ୍ଧି ଲଭିଲା କାଳିମା,
ତଥାପି ନୋହିଲା କ୍ଷୀଣ ଅପୂର୍ବ ଭଙ୍ଗିମା ।
କୃଶ ଅଙ୍ଗେ ଉଭାସିଲା ତେଜ ଦ୍ୱିଗୁଣ,
ମାତ୍ର ରୂପେ ଦେଖି ତ୍ରସ୍ତ ବନ ସଙ୍ଘ ପୁଣ ।
ଏଥନ୍ତେ ପ୍ରାବୃଟ କାଳେ ସଖି କରେ ତପ,
ଅଙ୍ଗେ ନବ ବାତପାତ ସହଣ ଅମାପ ।
ଗିରି କନ୍ଦର ଧ୍ୱନିତ ମୁଦିର ଗର୍ଜନ,
ଶ୍ରବଣେ ମାନସ ଭୟେ ନହେଲା କଂପନ ।

ଦୁର୍ଦ୍ଦିନ ଆପଣା ପକ୍ଷେ ନୋହିଲା ଦୁର୍ଦ୍ଦିନ,
ଅହୋରାତ୍ର ଧାରାପାତେ ଆର୍ଦ୍ର ହେଲେ ଦୀନ ।

ରଜନୀ ଘୋର ଅନ୍ଧାରେ ଖଦ୍ୟୋତ ସଂକୁଳ,
ଚିତ୍ତ-ପଟେ କରେ କାହିଁ ବ୍ୟସ୍ତ ସମାକୁଳ ?

ନିଶୀଥର ଝିଲ୍ଲୀରବ ଦିଗ ପ୍ରକଂପିତ,
ନିଂଦିନୀର ହୃଦଗତେ କରେ ଆଲୋଡ଼ିତ ?

ହେମନ୍ତେ ହିମ ବରଷା ଶ୍ରେଣୀ କନକାଂଗୀ,
ନଥିଲେ କଦାପି ମନେ ବେଦନା ଅଭଂଗୀ ।

ଶିଶିର ରଜନୀ କାଳେ ସରୋବର ଜଳେ,
ଆକଂଠ ନିମଗ୍ନ ତପ କଲେ ଭବ ବଳେ ।

ନକଲେ ଶୀତଳ ବାତ ପୀଡ଼ାରେ ଗଣନା,
ଶରୀର କଂପନେ ନାହିଁ ହେଲେ ଆନମନା ।

ଜଳମଗ୍ନା ଶୈଳସୁତା ଚଳ ଓଷ୍ଠାଧର,
ଅନିଳ କଂପିତ କିବା ନଳିନ ପତର ।

ସମୁଜ୍ଜ୍ୱଳ ମୁଖଶଶୀ ପୁଣ୍ଡରୀକ ପ୍ରଭା,
ଅନୁପମ ସଉନ୍ଦର୍ଯ୍ୟ ଜନମନ ଲୋଭା ।

ଅତୁଳ ସୁଷମା ସାର ସ୍ନେହ ଆକର୍ଷଣେ,
ମୁନିଗଣ ଆସୁଥିଲେ ତପ ସନ୍ଦର୍ଶନେ ।

ଦିନେ ନଗେନ୍ଦ୍ର-କନ୍ୟକା ତପସ୍ୟା ଆଶ୍ରମେ,
ପହୁଞ୍ଚିଲେ ମୁନିବେଶେ ଗିରୀଶ ସଂଭ୍ରମେ ।

ପାର୍ବତୀ ଚିତ୍ତ ସନ୍ଧାନେ ପଗୃରିଲେ ହର,
'କିସ ବା କର ସଜମ୍ମ ସୌମ୍ୟ ପ୍ରିୟତର ?
କେଉଁ ଅଭିଳାଷେ କର ଏ କଠୋର ତପ,
ସ୍ୱରଗ ଅଙ୍ଗ ସୁଷମା କର ଶୀର୍ଣ୍ଣ ଲୋପ ?'

ବୁଝିଲେ ସଖୀ ସମୀପୁ ହର ବର ପାଇଁ,
ପାର୍ବତୀ ଏ ଶ୍ରମ କାନ୍ତ ତପସ୍ୟା ସାଧଇ ।
କହିଲେ କପଟେ ବଟୁ ଦେଇ ମୃଦୁ ସ୍ମିତ,
'ତାପାଇଁ ଭର କପାଇଁ କ୍ଲେଶ ଖେଦ ଚିତ୍ତ ?
ଜଣାଯାଏ ତା' ସପଦ ନଥିବାରୁ ବାସ,
ସତତ ଭ୍ରମେ ଶ୍ମଶାନେ ବହି ଅପ୍ରକାଶ ।
ତ୍ରିନଚକ୍ଷୁ ତା' ସୌନ୍ଦର୍ଯ୍ୟ ନକରେ କି ହାନି,
ଅସ୍ଥିମାଳ ବିଲଂବିତ କେଉଁ ଗୁଣେ ସ୍ୱାମୀ ?
ପିତା ମାତା ଜାଣେ ନାହିଁ ଅଟେ କି ସମ୍ଭ୍ରାନ୍ତ ?
କିଂପା ବୃଥା ଅବଗୃର ସୌମ୍ୟ ନାରୀକାନ୍ତ ?
ଛାଡ଼ ତପ, ସେ ଡୁମ୍ବର ଅନୁଚିତ ବର,
ଏଣିକି ମାନସପଟୁ ଚିନ୍ତା ଦୂର କର ।'

ଶୁଣି ଶଙ୍କର ତୋଷିଣୀ ଜରଜର ରୋଷେ,
ଆଗନ୍ତୁକ ପରିଚୟ ନପାଇଣ ଘୋଷେ,–

'ସଂପଦଶାଳୀ ସୁରେନ୍ଦ୍ର ନମସ୍ୟ ଶଂକର,
ଶ୍ମଶାନ ବାସେ କି ଦୋଷ ସୃଷ୍ଟିକର୍ତ୍ତାଙ୍କର ?
ବଡ଼ଲୋକ ରୂପ କିବା ନୁହ ଶୋଭମାନ ?
କୁଳକର୍ତ୍ତା କୁଳ କିବା ପାଏ ଅପମାନ ?
ଆଉ ଅପବାଦ ବାଣୀ କହ ନାହିଁ ମୁନି,
ନର ହୁଏ ପାପଭାଗୀ କର୍ଣ୍ଣକୁହେ ଶୁଣି ।
ଏଥେ ଆଉ ରହିବନି ହେଲି ମହାବିଘ୍ନ',
ଏତେ କହି ଯାଏ ଚଳି କୁମାରୀ ଉଦ୍‌ବିଗ୍ନ ।
ମାୟାମୁନି ନିଜ ଦିବ୍ୟ ରୂପ ପରକାଶି,
ଆତ୍ମ ପରିଚୟ ଦେଲେ ମାନସ ହରଷି ।

ତନ୍ୱୀ ଅଙ୍ଗ ତଟେ ଗଲି ଖେଳି ଶିହରଣ,
ହୃଦ-ସିଂଧୁ ମଧ୍ୟେ ଉଠେ ପ୍ରଣୟ ପ୍ଲାବନ ।
ଲଜ୍ଜାବଶେ ବକ୍ଷେ ନତ ପଙ୍କଜ ବଦନ,
ପ୍ରଣୟ-ସଂପୁଟେ ଯେହ୍ନେ ପ୍ରୀତି-ସଂବେଦନ ।
ଶଙ୍କର ଲଭି ଅଖଣ୍ଡ ସୁଖ ଶାନ୍ତ ତହୁଁ,
ଭାଷିଲେ 'ଆଜୁଁ ମୋ ବାଞ୍ଛା ତୋ ମୃଣାଳ-ବାହୁ' ।

ଏତେ କହି ନିମିଷକେ ହେଲେ ଅନ୍ତର୍ଦ୍ଧାନ,
ନଂଦିନୀ ଚଳେ ବିଷାଦେ ନିଜ ନିକେତନ ।
ମଂଥର ଗତିରେ ଦିନ ଯାଏ ଅପସରି,
ଯୁଗଳ-ଆତୁର-ପ୍ରାଣେ ପ୍ରୀତିରସ ଭରି ।

ଦୁହେଁ ଦୂରେ ସ୍ୱପ୍ନାତୁର ଯେହ୍ନେ ସଂଧ୍ୟାଚକ୍ର,
ବିରହ-ବୃନ୍ତେ-ଫୁଟେଇ ମିଳନ-କୋରକ ।
ପାର୍ବତୀ ଦୁଃଖ ଦୁଃସହ ବଢ଼େ ଅନୁଦିନ,
ତେଣେ ଶିବ ଅଂଗ ଭଜେ ବିରହରେ ଶୀର୍ଣ୍ଣ ।

ଦିନେ କୈଳାସେ ଶଙ୍କର ବିବାହ ମନାସି,
ନିମନ୍ତ୍ରିଣ ସପ୍ତଋଷି ସମାଦରେ ଭାଷି,-
ବିହିଲେ ଆପଣା ଇଷ୍ଟ ପାର୍ବତୀର ପାଇଁ,
ପ୍ରସଙ୍ଗ ନିର୍ବଂଧ କର ଅବିଳଂବେ ଯାଇ ।

ସପ୍ତର୍ଷି ହୋଇ ପ୍ରେରିତ ହିମାଚଳ ପାଶେ,
ଶିବ ଇଚ୍ଛା ସବିଶେଷେ ଭାଷିଲେ ସହାସ୍ୟେ ।
ହର୍ଷ ଚିତ୍ତେ ଗିରିରାଜ ସଂଭାଷି କଥନ,
ସମ୍ମତି ପ୍ରଦାନ କଲେ ସପ୍ତର୍ଷି ବହନ ।—
ଶୁଣି ଅତି ତୋଷେ ହର ଦେଲେକ ଆଦେଶ,
'ବୈବାହିକ ଆୟୋଜନ ହେଉ ସବିଶେଷ' ।

ଯଥାକ୍ରମେ ମହାକାଳ ନନ୍ଦୀ ବିଶ୍ୱକର୍ମା,
ମଣ୍ଡପ ମଣ୍ଡନ କଲେ ଅପୂର୍ବ ସୁଷମା ।
ଦିବ୍ୟ କ୍ଷୌମ ଚନ୍ଦ୍ରାତପେ ଭୂଷିଲେ ଗଗନ,
ରଜତ ଆଦର୍ଶ ପ୍ରାୟେ ଶୁଭ୍ର ଶୋଭମାନ ।

ମଧ୍ୟେ ମଧ୍ୟେ ମୁକ୍ତାଗୁଚ୍ଛ ମୃଦୁ ଲମ୍ବମାନ,
ହୀରକ ତୋରଣାବଳୀ ଯେହ୍ନେ ବିଦୋଳନ ।

ନାନାବିଧ ରତ୍ନମୟ ଦୀପ ତୃଣାବଳୀ,
ମାଣିକ୍ୟ ସମାନ ଜ୍ୱଳେ ସୌମ୍ୟ ଦୀପମାଳୀ ।

ପୁଷ୍ପରାଗ ଗୁଚ୍ଛ ଗୁଚ୍ଛ ଦୁଆରେ ଦୋଳିତ,
ତରୁଶାଖେ ଆମ୍ର ଯଥା ବାତେ ଅଭିନତ ।

ନୀଳମଣି ନିରମିତ ଚୂତ କିଶଳୟ,
ତୋରଣମାଳା ଶୋଭିତ ସାରଙ୍ଗ ପରାୟ ।

ବୈଦୂର୍ଯ୍ୟମୟ ବିବିଧ ଫଳମାନ ତହିଁ,
ଶ୍ରେଣୀ ଶ୍ରେଣୀ ରାଜମାନ ଜନମନ ମୋହି ।

କାଚହାଣ୍ଡି, କାଚଗଛ, କାଚ ଦୀପାବଳୀ,
ବିଖଚିତ ସଯତନେ ନୁହେଁ ତାହା କଳି ।

ଶୁଭ୍ର ପରିଣୟ ସଭା ମଣ୍ଡପ ମଣ୍ଡିଣି,–
ଧରିବକ୍ଷେ ସ୍ୱର୍ଗପୁର ଥୋଏ କିଏ ଆଣି ?

ବ୍ରହ୍ମା ବିଷ୍ଣୁ ଇନ୍ଦ୍ର ଚନ୍ଦ୍ର ବହ୍ନି ଦିନମଣି,
ବରୁଣ ବାରୁଣୀ ଆଦି ଧର୍ମ ପ୍ରଭଞ୍ଜନ;–

ସକଳ ଦେବତାବୃଂଦ ରତନ ଆସନେ,
ସଭା ମଧ୍ୟେ କଲେ ବିଜେ ଶାନ୍ତ ତୁଷ୍ଟ ମନେ ।

ଗନ୍ଧର୍ବ ଚାରଣ ସିଦ୍ଧ ସାଧ୍ୟ ବିଦ୍ୟାଧର,
ତୁରଙ୍ଗ ବଦନ ଭୂତ ପ୍ରେତ ଓ କିନ୍ନର ।

ଅନ୍ତହର୍ଷେ ବଳସିତ ଚଉଦିଗେ ଭରି,
ରତ୍ନ ଯଥା ଝଲେ ସ୍ୱର୍ଣ୍ଣ ମେଖଳା ବେଢ଼ର ।

ବୋହୂଚ କେ ମୁଖେ ରଙ୍ଗ, ଶିରେ କାକପକ୍ଷ,
କାହା ଶିରେ ଶୋଭମାନ ଚଳପକ୍ଷ ଲକ୍ଷ ।

ପିନ୍ଧିଚ ପଗଡ଼ି କେହି କାହା ଶିର ଲଣ୍ଡା,
କେ ଧରିଚ ଜଟାଭାର ପକ୍ଷୀ ଗଣ୍ଡା ଗଣ୍ଡା ।

ମେନକା, ଉର୍ବଶୀ, ରମ୍ଭା, ରମା, ତିଳୋତ୍ତମା,
ଘୃତାଚୀ ଆଦି ସୁନ୍ଦରୀ ଅପ୍‌ସରୀ ସୁଷମା ।

ମଧୁର ରାଗିଣୀ ସ୍ୱରେ ତୋଳଂତି ମୂର୍ଚ୍ଛନା,
ପିକଜିତ କଣ୍ଠେ ରଚି ମୁଗ୍‌ଧ ଆଳାପନା ।

ଚରଣର ଛନ୍ଦନ୍ୟାସେ ବାଜଇ ଶିଞ୍ଜିନୀ,
କଟିତଟେ ନିନାଦଇ ସୁବର୍ଣ୍ଣ କିଂକିଣୀ ।

ରୌପ୍ୟହଂସ ଗ୍ରୀବା କରି ମୃଦୁ ଦୋଳାୟିତ,
ନେତ୍ର ତୂଣୀ ପ୍ରାନ୍ତେ ଢ଼ାଳି ଅପାଙ୍ଗ ଛୁରିତ ।

ମସୃଣ ମୃଣାଳ ବାହୁ ବୁଲଇ ମଂଥରେ,
ଅଳସ ରୌପ୍ୟ ଭୁଜଙ୍ଗ ଗତି ରୂପ ଧରେ ।

ନିତମ୍ବ ବିମ୍ବ ଝୁଲଇ ବାତେ ଆମ୍ର ସମ,
ଅମ୍ବରଫୁଟା ଉରସ ଲାସ୍ୟ ଅନୁପମ ।

ନୃତ୍ୟ ରତେ ବହୁରଙ୍ଗେ ଦେଖାଇ ସ୍ୱଦର୍ପ,
ଅଙ୍ଗସ୍ତରେ ଖେଳେ କିବା ଯୌବନ କନ୍ଦର୍ପ ।

ସେ ଶୋଭା ନୁହଇ କହି, ନାହିଁ ତା' ଉପମା,
ହୋଇଥିଲା ଆୟୋଜନ ବିଭା ପାଇଁ ଉମା ।
ବଶିଷ୍ଠ, ଅତ୍ରି, ଅଙ୍ଗିରା, ଜାବାଳି, ଗୌତମ,
ମରୀଚି, ପୁଲହ ଯତି ଆଦି ସମାଗମ ।
ବିତଣ୍ଡିକା ବାଇ ନାଚେ ଉନ୍ମାଦେ ନାରଦ,
ସହର୍ଷେ ବସି ଦେଖନ୍ତି ସନକ ସନନ୍ଦ ।
ସନାତନ ଦେବଗଣ ଋତୁ ବସୁ ସତ୍ୟ,
ମଙ୍ଗଳାଷ୍ଟକ ଆବୃତ୍ତି ପଠନେ ଉଷତ ।
ବିଷ୍ଣୁ ପାଶେ ବେଦବ୍ୟାସ ଆଦି ବାଲ୍ମୀକି,
ବିବାହ ବିଧି ଦର୍ଶନେ ସମାସୀନ ପ୍ରୀତ ।
ଏ ସମୟେ ହର ହୋଇ ଦିବ୍ୟ ବରବେଶ,
ବିବାହ ସଭାମଣ୍ଡପେ ହେଲେ ପରବେଶ ।

ଅଙ୍ଗେ ବିଭୂତି ଲେପିତ ନୀଳକଣ୍ଠ ରମ୍ୟ,
ଅଳଂକାର ବିମଣ୍ଡିତ ଅପରୂପ ସୌମ୍ୟ ।
ଭୁଜଂଗ ଯଜ୍ଞୋପବୀତ ଅସ୍ଥିମାଳ ଧର,
ପାଟଳ ଜଟାକଳାପ ତ୍ରିନେତ୍ର ସୁନ୍ଦର ।
ଦିଗମ୍ବର ଦିବ୍ୟାମ୍ବର ଚନ୍ଦନ ଚର୍ଚ୍ଚିତ,
ବିବିଧ ରତ୍ନ ଖଚିତ ମୁକୁଟ ମଣ୍ଡିତ ।
ତ୍ରିନେତ୍ର ଭାଲେ ଶୋଭିତ ଦିବ୍ୟ ବରପାଟୀ,
କପୋଳେ ମାଳତୀମାଲ୍ୟ ଗୁରୁ ପରିପାଟୀ ।

ହସ୍ତେ ସଜ୍ଜିତ ପିନାକ ପାର୍ବତୀ ପ୍ରଣୟୀ,
ମଂଡ଼ପେ ହେଲେ ବିଜୟୁ ଭୁବନ ବିଜୟୀ ।
ଉଚ୍ଛୁଳିଲା ବେଦଧ୍ୱନି ସନକ ବଦନୁ,
ବିରଞ୍ଚି ପୁରୋଧା ହେଲେ ଆସି ସ୍ୱସଦନୁ ।
ଉଚ୍ଚାରିଲେ ଚତୁରମୁଖୁ ଚତୁର ବେଦସ୍ୱର,
ଉଦାତ୍ତାନୁଦାତ୍ତ କ୍ରମେ ଗମ୍ଭୀର ସୁନ୍ଦର ।

ବିଜେ ଗିରିସୁତା ଧରି ଅଂଜଳି ଲବଣ,
ଗାୟତ୍ରୀ ସାବିତ୍ରୀ ଦେଲେ ହୁଳହୁଳି ଧ୍ୱଣି ।
ହର ବନ୍ଦାପନା କଲେ, ମିଶିଲା ନୟନ,
ଗିରିଶ ନନ୍ଦିନୀ ଲାଜେ ପୋତିଲା ଲୋଚନ ।
ବରଦତ୍ତ ଜଉତୁକ ବାଛି ଭଣ୍ଡାରୁ,
ପଞ୍ଚବସ୍ତ୍ର ଅଳଂକାର ଦେଲେ ଯୋଚ କାରୁ ।
ଗଉରୀ ଦେଲେ ସଜାଡ଼ି ଥାପି ମଥାମଣି,
ଉଦେ କି ଉଦୟଗିରି ଶୃଙ୍ଗେ ଦିନମଣି ?
ରତନ ନିର୍ମିତ ଚନ୍ଦ୍ର ସୂର୍ଯ୍ୟ ତାରାବଳି,
ମସ୍ତକ ସୀମନ୍ତେ ଦେଲେ ସଯତନେ ଭରି ।
ଚରଣ ପଙ୍କଜ ପ୍ରାନ୍ତେ ସହାସ୍ୟେ ଇନ୍ଦ୍ରାଣୀ,
ଯତନେ ଦେଲେ ଲଗାଇ ଅଳକ୍ତ ପାଣି ।
ମଙ୍ଗଳ ମନାସି ଜବେ ଦେବୀ ବୀଣାପାଣି,
ଗୁରୁ କମ୍ବୁ କଣ୍ଠେ ହାର ଦେଲେ ଖଞ୍ଜି ଆଣି ।

ନବେଦ୍ଦତା

ଗାୟତ୍ରୀ ଶୁଭ ସିନ୍ଦୂର ବିନ୍ଦୁ ଲଲାଟରେ,
ସାବିତ୍ରୀ ଚନ୍ଦନପାଟି ଲେଖିଲେ ଉପରେ ।
ମେନାଦେବୀ ବନ୍ଦାଇଲେ ଧରି ଅର୍ଘ୍ୟଥାଳି,
ଶିରେ ଦେଲେ ଅରୁଂଧତୀ ପୁଷ୍ପମାଲ୍ୟ ଭରି ।
ଗୁରୁପତ୍ନୀ ତାରାଦେବୀ ତଣ୍ଡୁଳ ଅଂଜଳି,
ଛାୟା ମାୟା ସମର୍ପିଲେ ଗୁବାକୁ ଯୁଗଳୀ ।
ଶଂକର ପୁରତେ ବଜେ ଶ୍ୱେତାଙ୍ଗୀ ପାର୍ବତୀ,
ବିଧିମତେ ଗଲ୍ ପଡ଼ି ଶୁଭ ହସ୍ତ ଗ୍ରଂଥି ।

ଯଉତୁକ ଦେଲେ ଝିଅ ଶୁଭ୍ର ହିମାଚଳ,
ବୈଦୂର୍ଯ୍ୟ ମଣି ମାଣିକ୍ୟ ଆବର ଭୂତଳ ।
ଅଶ୍ୱ ହସ୍ତୀ ଦାସ ଦାସୀ ଦେଲେ ଅକଳନା,
ହିସାବ ନକାଶ କେ ବା କରେ କଳପନା ?
ତଦନ୍ତେ ଜୟା ବିଜୟା ଆରମ୍ଭିଲେ ହୋମ,
ଶେଷକଲେ ବରମୋଦେ ଲଭି ସସଂଭ୍ରମ ।
ବଢ଼ାଇଲେ ସପ୍ତପଦୀ ବିଧିକ ଶଂକର,
ସାଙ୍ଗୋପାଙ୍ଗ ତଦୁପରେ ହୁଏ ଖେଳଘର ।
ଶଚୀ ସାବିତ୍ରୀ ଗାୟତ୍ରୀ ସଙ୍ଗେ ମେନା ରମା,
ବରକନ୍ୟା ବେନିଙ୍କର କଲେ ବନ୍ଦାପନା ।
ବରକନ୍ୟା ହସ୍ତଗତେ ଖେଳେ କପର୍ଦ୍ଦିକା,
ଶଚୀ ଦେଲେ ଉଚ୍ଚେ ଡ଼କା ଉମାଙ୍କର ଜିତା ।

ଲଜ୍ଜାବଶେ ଅରୁଣିତ ଶିବଙ୍କ ବଦନ,
ପତ୍ନୀପାଶେ ପରାଜୟୁ ନୁହ ଅପମାନ ।

ମୃଦୁହାସ ପରକାଶି ଗୃହିଁଲେ ଉମାରେ,
ସ୍ମିତହାସ୍ୟ ଖେଳେ ଗୁରୁ ତଟ ବିମ୍ବାଧରେ ।

ଦ୍ୱିଗୁଣୁ ଖେଳେ କହିଲେ ଦେବୀ ଅରୁନ୍ଧତୀ,
'କନ୍ତିଚନ୍ଦ୍ର ହର ଏବେ ଦେଖ ଆଗୋ ସତୀ' ।

ପରସ୍ପର ଜଟାଜଟ ପୁଣି ହରାହରି,
ଅନାଅନ ହସାହସି ଚକ୍ଷୁ ଠରାଠରି ।

ପରସ୍ପର ମଧ୍ୟେ ହେଲା କପର୍ଦ୍ଦିକା ବିଧି,
ବିବାହ ପ୍ରଥମ ଯାମେ ଅନୁକୂଳ ସିଦ୍ଧି ।

ପଞ୍ଚଗ୍ରାସୀ ବିଧି କଲେ ଅମୃତ ଭୋଜନ,
ବରକନ୍ୟାଙ୍କ ସନ୍ତୋଷ କେ କରେ ବର୍ଣ୍ଣନ ।

ନ ହୋଇଚି କେଉଁଠାରେ ଏସନ ପାର୍ବଣ,
ତ୍ରିଭୁବନେ ପଟାନ୍ତର କାହିଁ ତା ସମାନ ?

କାହିଁ ଲାଗିଚି ନର୍ତ୍ତନ, ହାଟହୁର କାହିଁ,
କାହିଁ କୌତୁକ ତାମସା ଚଉ ନମସ୍କାଇ ।

ବାଟେ ଘାଟେ ଅସଂଖ୍ୟାତ ଜନ ସମାଗତ,
ନାନା ଆମୋଦେ ପ୍ରମୋଦେ କରନ୍ତି ଉତ୍ପାତ ।

କାହିଁ ଭୂତକେଳି କାହିଁ ପ୍ରେତଙ୍କ କୁହାଟ,
କାହିଁ ଡାକିନୀ ଶାକିନୀ ଭେଟ ଅପ୍ରକଟ ।

କଳକଳା ରଡ଼ି ଗୁଡ଼ି କୁଦ ମାତି ଡେଇଁଲେ,
କାହିଁ ପରମଥ ଗଣ ଯାଆନ୍ତି ଧସେଇ ।

ସମ୍ବନ୍ଧ ଜନଙ୍କ ହାସ ପରିହାସ କଥା,
ଶୁଣନ୍ତି ସକଳେ ତହିଁ, ଘୋର ମାଦକତା ।
କାହିଁ ଚନ୍ଦ୍ର ଉଦଆର ତେଜ ପରଖର,
ଜ୍ୱଳେ ବିଜୁଳିର ବତି କାହିଁ ନିରଂତର ।
କାହିଁ ଚକ୍ରଦଂଡ଼ ଆଦି ବହୁବିଧ ବାଣ,
ଗୁଡ଼ୁମ ଗୁଡୁମ ଫୁଟି କରେ ଆକର୍ଷଣ ।
କାହିଁ ଦେବ ଦେବୀ ପୂଜା ଲାଗିତ ଉତ୍ସୁକେ,
ଆନନ୍ଦର ଉତ୍ସ ଝରେ ପ୍ରତିଲୋକ ବୁକେ ।

ବିବିଧ ଅନ୍ନ,ବ୍ୟଞ୍ଜନ ବିବିଧ ପିଷ୍ଟକ,
ଭୁଞ୍ଜେ ଚଉଦିଗେ ଘେରି ଆଭୁବନ ଲୋକ ।
ଅନଳ ଉପୂର ଭୋଜ୍ୟ ସାମଗ୍ରୀ ରଂଧନେ,
ଅଣାଘ୍ରାଣ ବାତ ହେଲେ ପରଶୁଣି ଗଣେ ।
ଭୁଞ୍ଜିଲେ ଉତ୍ସବ ମୋଦେ ଚଉଦ ଭୁବନ,
ଅମୃତରୁ ଅତ୍ୟଧିକ ସ୍ୱାଦୁ ମନୋରମ ।

ଆନନ୍ଦର ସୀମା ଆଉ ନରହିଲ କାହିଁ,
ତୃପତ ସମସ୍ତ ଜନେ ଖାଇ ପିଇ ତହିଁ ।
ରମ୍ଭା, ଉର୍ବଶୀ, ମେନକା, ରମା, ତିଳୋତ୍ତମା,
ଘୃତାଚୀ ସୁରସୁନ୍ଦରୀ ଆଦି ମନୋରମା ।

ସଜାଡ଼ିଲେ କଉତୁକେ ମଧୁଶଯ୍ୟା ଘର,
ଅପୂର୍ବ ସ୍ୱର୍ଣ୍ଣ ପର୍ଯ୍ୟଙ୍କ କାହିଁ ପଟାନ୍ତର ?
ନାନାବିଧ ଉପଚାରେ ମଧୁଶଯ୍ୟା ବିଧି,
ସମାପନ ହେଲା ସେ ତ ଭୁବନର ବିଧି ।

ପହୁଞ୍ଚିଲା ତହୁଁ ରଙ୍ଗେ ଖେଳ ଫଗୁପାଣି,
ଯହିଁ କେନ୍ଦ୍ରୀଭୂତ ହୁଏ ଆନନ୍ଦ ଧରଣୀ ।
କେ ଧରିଚି ମୋଦଚିତ୍ତେ ହାତେ ପିଚକାରି,
କେ ବା ସଳିଳ ସିକତ ଫଗୁ ଠୁଳ କରି ।
କେ ଦିଏ ମୁଖେ ବୁଲାଇ ଫଗୁପାଣି ହାତ,
ଶୁଭ୍ର ଗଣ୍ଡ ରକ୍ତପଦ୍ମ ସମ ପ୍ରତିଭାତ ।
କେ ଦିଏ ବୁଲାଇ କଣ୍ଠେ ସୁରମ୍ୟ ସୁନ୍ଦର,–
ଫଗୁପାଣି-ବୁଡ଼ା-ନୀଳ-ଉତ୍ପଳ-ମୃଣାଳ ।
କେ ଦିଏ ଗଭରେ ଖୋସି ଫଗୁଳ-ବଞ୍ଜୁଳ,
କା'ର କଣ୍ଠେ ଦୋଳାୟିତ ରକ୍ତିମ-ବକୁଳ ।
କେ ଦିଏ କାହାର ମୁଖେ ଫଗୁପାଣି ସିଞ୍ଚି,
ଅବିର-ବୁଡ଼ା-ବଉଳ ବ୍ୟଜନକୁ ବିଞ୍ଚି ।
ଏସନ ହୁଏ ସମାପ୍ତ ଖେଳ ଫଗୁପାଣି,
ଆନନ୍ଦ ମଧ୍ୟେ ସନ୍ତୃପ୍ତ ଆନନ୍ଦ ଧରଣୀ ।

ଯଥୋଚିତ ପୁରସ୍କାର ପାଇ ଦେବଗଣ,
ସିଦ୍ଧ ସାଧ୍ୟ ବିଦ୍ୟାଧର ଗନ୍ଧର୍ବ ଚାରଣ ।

ସସମ୍ମାନେ ଗଲେ ଚଳି ଯେ ଯାହା ଭୁବନ,
ଯାବନ୍ତ ବିଶ୍ୱ ଦର୍ଶନେ ସାର୍ଥକ ନୟନ ।

ତ୍ରିଲୋକ ଜନନୀ ସହ ଭୁବନ ବିଜୟୀ,
ଶୋଭାଯାତ୍ରା ଆରମ୍ଭିଲେ ବୃଷଭ ଆରୋହି ।
ପହୁଞ୍ଚିଲେ ସତ୍ୟଲୋକେ ହେଲା ମହୋତ୍ସବ,
ଘେନିଲେ ବିରଞ୍ଚି ପୂଜା ବହି ଭକ୍ତି ଭାବ ।
ସସମ୍ମାନେ ଗଲେ ତହୁଁ ତପ ଲୋକାଳୟେ,
ଦିବ୍ୟ ପିତୃ ଅର୍ଘ୍ୟ ଘେନି ବିଶୁଦ୍ଧ ପ୍ରଣୟେ ।
ଜନଲୋକେ ଯାଇ ତହୁଁ ଗଉରୀ ଶଂକର,
ଦେବର୍ଷି ଅର୍ଚ୍ଚନା ଲଭି ହେଲେ ମୋଦଭର ।
ତହୁଁ ଗମିଲେ ବେନଏଁ ତପସ୍ୱିନୀ ଦ୍ୱାର,
ଆଶ୍ରମ ପୁରତେ ଉଭା ଶ୍ରୀ ପରମେଶ୍ୱର ।
ଆନନ୍ଦ ଗଦ୍‌ଗଦ ଭରେ କରି ଦରଶନ,
ତପସ୍ୱିନୀ ହେଲେ ସାର୍ଥ କୃତକୃତ୍ୟ ମନ ।
ପରବେଶ ମର୍ଲୋକେ ବିମାନ ଜନଙ୍କ,
ଘେନ ଭକ୍ତି ଭାବ ହୃଦେ ଫେଡ଼ିଲେ ଆତଙ୍କ ।
ସୁରଲୋକ ମଧ୍ୟେ ସୁର ସୁନ୍ଦରୀ ନିକର,
ବନ୍ଦାଇଲେ ଅର୍ଘ୍ୟଥାଳି ବହି ନିଜ କର ।
ପ୍ରଣମିଲେ ଜଗତ୍‌ପିତା ପାଦପଦ୍ମ ତଟେ,
ଦେବେନ୍ଦ୍ର ପୂଜିତ ହୋଇ ଗମିଲେ ତଦନ୍ତେ ।

ଭୂଲୋକେ ଅତି ପବିତ୍ର ବାରାଣସୀ ଧାମେ,
ପରବେଶି ଅବତୀର୍ଣ୍ଣ ବିଶ୍ୱନାଥ ନାମେ ।
ଅନ୍ନପୂର୍ଣ୍ଣା ଦେବୀ ଯହିଁ ଦୟାବନ୍ତ ହୃଦେ,
ଚତୁଷ୍ପଦେ ମିଷ୍ଟ ଅନ୍ନ ଯୋଗାନ୍ତି ସଂଭ୍ରମେ ।
କର୍ଣ୍ଣେ ମଂତ୍ରଦାନ ଦିଏ ଶିବ ପଞ୍ଚାକ୍ଷରୀ,
ବାରାଣସୀବାସୀ ଜନେ ଆତ୍ମା ମୋକ୍ଷ କରି ।
ତହୁଁ ଅତଳ ବିତଳ ତଳ ତଳାତଳ,
ରସାତଳ ପାତାଳରେ ଭ୍ରମି ଚନ୍ଦ୍ରଧର ।
ସୁଖେ ପରବେଶ ହୋଇ କଇଳାସ ଦ୍ୱାରେ,
ଭ୍ରମିଲେ ହର ପାର୍ବତୀ ଅଭେଦ ରୂପରେ ।

---

ଆଧୁନିକକାଳରେ ବ୍ୟକ୍ତି ଯେତିକି ଯେତିକି ସମାଜଶୃଂଖଳରେ ଆବଦ୍ଧ ହେଉଛି, ସେତିକି ସେତିକି ସ୍ୱାତଂତ୍ର୍ୟତାର ଚିତ୍କାର ଶୁଣିବାକୁ ମିଳେ । ଏ ଯୁଗର ସାହିତ୍ୟରେ ମନୁଷ୍ୟର ସେ ଆତଂକ ପରିସ୍ଫୁଟ । ତେଣୁ ଆଧୁନିକ ସାହିତ୍ୟ ସମଧିକ ବ୍ୟକ୍ତିକେଂଦ୍ରୀ । ଅନେକ ସମୟରେ ଏହା ଅନ୍ୟ ନିରପେକ୍ଷ ମଧ୍ୟ । ଏହା ସ୍ପୃହଣୀୟ କି ନୁହେଁ ମୁଁ ଠିକ୍ କହି ପାରୁନାହିଁ । ମାତ୍ର ଏହା ସତ୍ୟ ।

ହୁଏତ ଦିନେ କବିର ହୃଦୟ ଏକ ସଂବେଦନଶୀଳ ସ୍ୱଚ୍ଛ ଦର୍ପଣ ସ୍ୱରୂପ ଅନ୍ୟର ସୁଖଦୁଃଖର ପ୍ରତିଫଳନ ପାଇଁ ସଦାସର୍ବଦା ଅତିରିକ୍ତ ଚେତନପ୍ରବଣ *(Sensitive)* ହୋଇ ରହିଥିଲା । କବି ତା'ର ସେହି ଚିତ୍ତ-ମୁକୁରରେ ସମାଜର ଚିତ୍ର ଯେପରି ପ୍ରତିଫଳିତ ହେବାର ଦେଖୁଥିଲା, ତାହାହିଁ ପ୍ରକାଶ କରୁଥିଲା । ଜ୍ଞାନମୟ କୋଷ ପ୍ରକାଶମୟ କୋଷରେ ପରିଣତ ହେଉଥିଲା । କାବ୍ୟକବିତା ଯେତେବେଳେ ଶ୍ରୁତିରେ ପର୍ଯ୍ୟବସିତ ଥିଲା, ସେତେବେଳେ ଯଦି ଆଧୁନିକ ଯୁଗର ସାହିତ୍ୟ ଭଳି ଏହା କେବଳ ବ୍ୟକ୍ତିକେଂଦ୍ରୀ ହୋଇଥାନ୍ତା, ଆଜି ହୁଏତ ମାନବସମାଜ ପ୍ରାକ୍ ଐତିହାସିକ କାଳର ବହୁ ଅମୂଲ୍ୟ ମଣିରତ୍ନ ଆହରଣ କରିବାରୁ ବଂଚିତ ହୋଇଥାନ୍ତା । ସେଥିପାଇଁ ନିଭୃତରେ ଆପଣାର ଅନୁଭବକୁ ଆପଣାଠାରେ ବଖାଣିବାରେ ହିଁ କବିର କର୍ତ୍ତବ୍ୟ ଶେଷ ହେଉ ନଥିଲା । ସମାଜର ହୃଦ୍‌ବୋଧ ହେଲାଭଳି କବି ତା'ର କାବ୍ୟ ରଚନାକୁ ସୁସ୍ପଷ୍ଟ ଭାଷାରେ ସର୍ବ ସମକ୍ଷରେ ପରିବେଷଣ କରୁଥିଲା । ସମାଜ ଯୋଗ୍ୟ ବସ୍ତୁକୁ ଗ୍ରହଣ କରି ଅଯୋଗ୍ୟ ବସ୍ତୁକୁ ପରିହାର କରୁଥିଲା ।

କିନ୍ତୁ ବର୍ତ୍ତମାନ ଲିପି ଆବିଷ୍କୃତ ହୋଇଛି କେବଳ ନୁହେଁ, ଲିପି-ମୁଦ୍ରା ମଧ୍ୟ କବିର ନାନା ଅନୁଭୂତିର ସଙ୍କେତ ସଂବହନ କରି ପ୍ରଚୁର କରୁଛି । ଫଳରେ କବି ଯେତେ ଆତ୍ମକେନ୍ଦ୍ରୀ ହେଲେ ମଧ୍ୟ, ଯେତେ ନିଭୃତ ନିଳୟ ମଧ୍ୟରେ ଲେଖନୀର ଚାଳନା କଲେ ମଧ୍ୟ, ତାହା କବିର ଆୟତ୍ତରୁ ମୁକ୍ତି ଲଭି ନ କରି ସ୍ଥିର ହୋଇ ରହିପାରୁ ନାହିଁ ।

ସମସ୍ୟା ଆଜି ଠିକ୍ ବିପରୀତ ଭାବରେ ସୃଷ୍ଟି ହୋଇଛି । କବିର ଚିତ୍ତ ଜନସାଧାରଣଙ୍କର ସୁଖଦୁଃଖର ପ୍ରତିଫଳନ ନିମନ୍ତେ ପ୍ରସ୍ତୁତ ହେଉ ନ ହେଉ, ଜନସମାଜ ଆଜି କବିର ଅନ୍ତଃପ୍ରକାଶକୁ ହୃଦୟଙ୍ଗମ କରିବା ନିମନ୍ତେ ନିଜର ଚିତ୍ତ ଏବଂ ଜ୍ଞାନକୋଷକୁ ପରିମାର୍ଜିତ କରିବାକୁ ବାଧ୍ୟ ।

'ଲୋହିତ ଗୁଣ୍ଠନ'ର କବି ବ୍ୟକ୍ତିକେନ୍ଦ୍ରୀ । କେବଳ 'ବାପୁ ତର୍ପଣ' ଓ 'ହେ ରାଜପୁତ୍ର' କବିତା ଦୁଇଟିକୁ ଛାଡ଼ିଦେଲେ, ପୁସ୍ତକରେ ସନ୍ନିବେଶିତ ଅଧିକାଂଶ କବିତା ଭାବପ୍ରବଣ । ବ୍ୟକ୍ତି ଅନୁଭୂତି ହିଁ ବିଶେଷ ଭାବରେ ପ୍ରକଟିତ ହୋଇଛି ।

× × ×

ପୁସ୍ତିକାଟିର ପ୍ରଥମ କବିତା 'ବେଣୁ' ଗୋଟିଏ ଆଶାବାଦୀ କବିତା ଏବଂ ଏ ପୁସ୍ତିକାର ଶ୍ରେଷ୍ଠ କବିତା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । 'ଗତ ବସନ୍ତ', 'ବର୍ଷା ବିରହୀ', 'ଉଦ୍ୟାନଲଳନ', 'ଉଷାର ଉତ୍ତର', 'ଶ୍ରାବଣ ସଙ୍ଗୀତ' ପ୍ରଭୃତି ପ୍ରାକୃତିକ କବିତା ସୁଖପାଠ୍ୟ । 'ଉଷାର ଉତ୍ତର' ପ୍ରାକୃତିକ କବିତା ହେଲେହେଁ, ଏଥିରେ ଚିନ୍ତାର ବୈଶିଷ୍ଟ୍ୟ ଅତି ସୁସ୍ପଷ୍ଟ ।

"ଅଫୁଟା ରହିଲା ଫୁଲ କାହିଁ ନିଜ ସ୍ନେହେ,
ଅଚଖା ରହିଲା ମଧୁ କାହିଁ ମନ-ଗେହେ,
ଅଗୁଆ ରହିଲା ଗୀତ କାହିଁ ନିଜ ପାଇ,
କର ନାହିଁ ସଖୀ ଶୋଚନା ସେଇଥିପାଇଁ,
ଉତ୍ତରେ ପ୍ରିୟା ଧରଣୀ ତଳକୁ ଚୁହିଁ—
'ସେ ସବୁ ଯେ ପ୍ରିୟ                    ସେ ସବୁ ଆମର
ଆସନ୍ତା କାଲି ପାଇଁ ?"

କବିତାଗୁଡ଼ିକୁ ପାଠ କଲେ ଗୋଟାଏ କରୁଣ ରସର ସ୍ପର୍ଶ ମିଳିଲେ ମଧ୍ୟ କବିଙ୍କର ମନ ଆଦୌ ନିରାଶାବାଦୀ ନୁହେଁ ।

କବିତାଗୁଡ଼ିକରେ ସ୍ଥାନେ ସ୍ଥାନେ ଯତିପାତରେ ତ୍ରୁଟି ଦେଖା ଦେବାରୁ ମନେହୁଏ ଯେ, ଏହା ପାଠ ଠାରୁ ଅଧିକ ଭାବରେ ଗାନ ଉଦ୍ଦେଶ୍ୟରେ ରଚିତ ହୋଇଛି । ମୁଦ୍ରଣବେଳେ ମଧ୍ୟ କବିତାର ଯତି ପ୍ରତି ଦୃଷ୍ଟି ଦେଇ ପଂକ୍ତି ବିନ୍ୟାସ କରିଥିଲେ 'ବର୍ଷା ବିରହ', 'ଉଷାନଳିନ' ପ୍ରଭୃତି କବିତା ସହଜପାଠ୍ୟ ହୋଇଥାନ୍ତା ।

ମୁଁ କବିଙ୍କର ଉତ୍ତରୋତ୍ତର ଉନ୍ନତତର କାବ୍ୟଶିଳ୍ପ ପ୍ରକାଶ ଦେଖିବାର କାମନା କରୁଛି ।

'ଡଗର' କାର୍ଯ୍ୟାଳୟ,
ଜୁଲାଇ ୨, ୧୯୫୮

ନିତ୍ୟାନଂଦ ମହାପାତ୍ର

## ବେଣୁ

ଯେ ବେଣୁ ପଡ଼ିଛି ପଥେ
ଶତ ଶତ ଯୁଗ ମୂକ ହୋଇ,
ଶୋଇଛି ଯେ ରୁଦ୍ଧ ଅଭିମାନେ
ଦିଅ ତାକୁ ଦେବି ମୁଁ ବଜାଇ ।
ଘାସବୁକେ ଢ଼ାଳି ମଳ ଗ୍ରୀବା,
ସେଇ ମୋର ଚିର ପରିଚିତ;
ଏଇ ପଥେ ଫେରିଛିରେ କେତେ
ପରାଙ୍ମୁଖ ଯୋଦ୍ଧା ପଦାହତ ।

କଣ୍ଠେ ତାର ବାଜିନାହିଁ ସ୍ୱର
ପ୍ରଣୟୀର ମୁଗ୍ଧ ଅଭିସାରେ,
ମୁହଁମାଡ଼ି ନେଇଛି ଶପଥ
କହିବନି କାରେ କଥା ବାରେ ।
ଯୁଦ୍ଧଜୟୀ ଫେରିଛି ସହର୍ଷେ
ଉଡ଼ାଇ ତା' ବିଜୟ କେତନ,
ଦୁରଗର ଛରଗତ ପଥେ,—
ଚୁହିଁନାହିଁ ମେଲି ତା' ନୟନ ।

ଜୟସୂର୍ଯ୍ୟ ନଇଁଛି ପଶ୍ଚିମେ
ବିହଗର କଣ୍ଠେ ଭରିଗାନ,
ତଥାପି ତ କହି ନାହିଁ କଥା
ଚିତ୍ତେ ବହି ଯୁଗ ଅଭିମାନ ।
ପାହାଡ଼ର ଗେରୁଗୁହା ତଳେ
ମହାବଳ ଡାକିଛି ବିହ୍ୱଳେ,
ଉପତ୍ୟକା ତଳେ ଥକି ଥକି
ପ୍ରସବିଛି ମୃଗୁଣୀ ବିକଳେ ।

ବାଜିନାହିଁ ତଥାପି ସେ ବେଣୁ
ଫିଟିନାହିଁ କଣ୍ଠ ନାଳ ତାର,
ଜୀବନର ରହସ୍ୟ କୋରକେ
ଲୁକ୍କାୟିତ ବ୍ୟଥାର ସ୍ୱାକ୍ଷର ।

# ଲୋହିତ-ଗୁଂଠନ

କହେନାହିଁ କିଂପା କଥା ପଦେ
ପାଂଥ ଯାଏ ଚଳି ସେଇ ପଥେ,
ନିଶୀଥର ଗୋପନ ଗୁଂଠନ
ମେଲିହୁଏ ଶୁଭ୍ର ପରଭାତେ ।

ଭରିଯାଏ ନାଉରୀ ସଂଗୀତ
ତଥାପି ତ ଗାଏ ନାହିଁ ଗୀତ,
ଦିଅ ଆଜି ସେଇ ବେଣୁ ମତେ
ନିରନ୍ଧ୍ର ସେ ଆଉ ଶାଶ୍ୱତ ।

ପ୍ରାତ—୭
୧୨-୧-୪୮

---

## ପୁଷ୍ପିତା

ଲଜ୍ଜାବଂଶ ଲୋ ତୁଇ,
ମରମେ ସରମ ଆସି ତ ଗଲାଣି
ଲୁଚ ଯା ଆଜଠୁ ସଖି,
ଲଜ୍ଜାବଶ ଲୋ ତୁଇ ।

ପ୍ରୀତି ସଙ୍ଗୀତ ପାଇଁ ମନ୍ମଥ
ଧିରେ କହିଗଲା କାନେ,
ଫିଟିଗଲା ଶୋଭା- ପସରା-ପ୍ରତିଭା
ବସଂତ ଉପବନେ,
ଉଦ୍‌ଭିନ୍ନ ଯଉବନେ,
ପୁଷ୍ପିତା ହେଲୁ ତନୁ-ପତାନଣୀ
ମଳୟର ପରଶନେ,
ଲୁଚ ଯା ସଂଗୋପନେ ।

ଲୋହିତ-ଗୁଂଠନ

ନେତ୍ର-ତୂଣୀରେ ଯୋଗଲଣି ଶର
ମନସିଜ ମନ ଜାଣି,
ଭ୍ରୂଲମାଳଫଣି କାମଧନୁ ଟାଣି
ନାଚକୁ ଶିଖି ଗଲଣି;
କପୋଳେ କେଦେଲା ଆଣି,
ଲାଜତରୁଣିମା ଫାଟଲ ସୁଷମା
ନବ ରବି ଛବି ଟାଣି
ଲୁଚ ଯା ଲଜ୍ଜାରଣୀ ।

ଉର ବଂଧୁର ସଂପୁଟ ଘର
କୁନ୍ଧ ଦେଲଣି ଲୋଭେ,
ତରଳ କନକ ସ୍ଫୁଟ ଚଂପକ
ତନିମା ତନୁ କ ଶୋଭେ,
ବାସତଳେ ରୂପ ଫୁଟେ,
ପ୍ରଭାତ ଶୁଭ୍ର ନଳିନ କଳିକା
କୁହେଳିକା ଦଳି ଉଠେ,
ଲୁଚ ଯା ଅତର୍କିତେ ।

ଗୁରୁ ନିତଂବ ଚନ୍ଦ୍ର ବିଂମ୍ବ
ଗଢ଼ିଲଣି ଠିକ ଠାମେ,
ପାଦ ସଂଚର ମୃଦୁ ମଂଥର
ହେଲଣି ତ ଅନୁପମେ,

ଲୋହ୍ୱିତ-ଗୁଂଠନ

ଯଉବନ-ତରୁ ଫୁଟି,
କୁସୁମ ବଳୟେ        ଜୈବ ଗଂଧ-
ବତାସ ଗଲାଣି ଛୁଟି,
ଲୁଚ ଯା ଲଜ୍ଜାବତୀ ।

ପୀନ ଉର ମେରୁ        ଉରୁ ମଧୁରୁ
କଟୀ ଭଜିଲାଣି କୃଶ,
ପାଟଳ ଲେପିତ        ଅଧର ତଳେ ତୋ
ଫୁଟିଲାଣି ଶ୍ୱେତ କାଶ,
ନଖେ ଟାଣିଲୁଣି ରେଖା
ମନର ଭାବନା        ମନେ ଲୁଚାଇବା
ହେଲାଣି ତ ତୋତେ ଶିଖା,
ଲୁଚ ଯା ନପଡ଼ ଦେଖା ।

ଶାଳ ବୃଂତରେ        ଫୁଟିଲାଣି କଢ଼ି
ଯଉବନ ସମୀରଣେ,
ଚଞ୍ଚ ହେଲାଣି        ଛନ ଛନ ଛନ
କୁରଙ୍ଗୀ ଯଥା ଭ୍ରମେ;
ବସନ୍ତ ତରୁ ଡ଼ାଳେ,
କୋକିଳ ଦେଲାଣି        କଣ୍ଠରେ ଭରି
ସନ୍‌ଗୀତ ଉତ୍‌ସଳେ,
ଲୁଚ ଯା ଅନ୍ତରାଳେ ।

### ଲୋହିତ-ଗୁଂଠନ

ଅଙ୍ଗ ଲତାରେ     ଝୁଲିଲଣି ତୋର
  ମାନସ-ଦ୍ରାକ୍ଷାଫଳ,
ଉଡ଼ିଲଣି ବାତେ     ଚରଣ ତଳର
  ଝୀନ ମଳ ଅଂଚଳ,
ମନେ ପଶିଲଣି ଚିନ୍ତା
ଶୋଭେନାହିଁ ଆଉ     ପିଲାଖେଳ ତୋର
ମୁଗ୍ଧା ଅନାଘ୍ରାତା-
ଲୁଚି ଯା ଲୋ ପୁଷ୍ପିତା ।

ଅପରାହ୍ଣ—୩
୭-୭-୪୮

୧

## ଶ୍ରାବଣ ସଂଗୀତ

ଯେ ଦିନ ତୁମେ ସଖି ! ଏମମ ଅଙ୍ଗନେ,
ଫୁଟାଇ ଗଲ ତବ ଚରଣ ଶତଦଳ;
ଦୋଳାୟି ପୃଥୁ ଶ୍ରୋଣୀ ପବନେ ଚୂତ ସମ,
ଖେଳାଇ ବାସ ତଳେ ରୂପ ପରିମଳ;

ନୂପୁର ଘାତେ ଚରଣ ଗୁଞ୍ଜି,
ଅଧର କୋଣେ ପ୍ରୀତି-ଫଲ୍‌ଗୁ ଢ଼ାଳି,
ମୃଦୁ ବତାସେ ସ୍ନେହ କଥାଟି କହି,
ଗଣ୍ଡତଳେ ନୀଳକେଶ ଝୁଲାଇ,

## ଲୋହିତ-ଗୁଂଠନ

ଅଳସେ ଡ଼ାଳ ମଧୂ ଆନତ ଆଖି,—
ଶଫ୍ଳଶିଷାଶିରେ ବେଣୁଟି ରଖି,

ଅଯତନେ ଯୂଥୀଫୁଲ ଟକାଇ ଗୋଟି ଗୋଟି,
ଦୋଲାଇ ତରୁଡ଼ାଳେ ବସନ ଅଞ୍ଚଳ,
ସେଦିନ ତୁମେ ସଖି ! ଏମମ ଅଙ୍ଗନେ,
ଫୁଟାଇ ଗଲ ତବ ଚରଣ ଶତଦଳ ।

ମୁହିଁ ଯେ କବି ସଖି ! ତୁମେ ଯେ ରୂପରାଣୀ,
ଜୀବନ ଗୀତେଗୀତେ ଫୁଟଇ ତବବାଣୀ;
ବ୍ୟବଧି ଅବସରେ ଯେତେ କବିତା ରଚେ,
ତା' ବୁକେ ଜାଗେ ତବ ନମ୍ର ଶ୍ରୀମୁହାଁଣୀ;

କେସନ କହ ପ୍ରିୟା ଭୁଲିବି ସେଇ ଆଶା,
ହରାଇଦେବି କହ ପୀୟୂଷ ବୋଲା ଭାଷା,
ତୁମେ ଯେ ମୋର ପ୍ରିୟ ଜୀବନ ମଧୁ ଊଷା,
ନିଃସ୍ୱ ଭିକାରୀର ନିଧି କନକ ଭୂଷା,

ତୁମେ ଗୋ ପଦ୍ମ ଫୁଲ ମୁହିଁ ତ ମଧୁକର,
ମୀରଦ ତୁମେ ପଦ୍ମ ମୁଁ ଚାତକ ଲୋତକ ପାଣି,
ମୁହିଁ ତ କବି ସଖି ! ତୁମେ ଯେ ରୂପରାଣୀ,
କବିତା ଛନ୍ଦରେ ଫୁଟାଅ ତବ ବାଣୀ ।

ଲେହ୍ମତ-ଗୁଂଠନ

ଗୋଲାପଦଳପୁଟେ ଝରଇ ମୃଦୁ ବାତେ
ଆଜି ବାଦଲ ରାତେ ବନ୍ଧୁ ବାରି ନଇଁ;
ଯତନେ ତାରେ ମୁହଁ ପରଶି ଆଣେ ଶୋଇ
ଗଣ୍ଡ ପରେ ଧୀରେ ଓଦା ଫୁଲଟି ଥୋଇ;

ଫୁଟାଇ ଶତଦଳ ଏ ମୋର ମନ-ସରେ,
ଆସ ଗୋ ଆସ ରାଣୀ ଛନ୍ଦ ପଦ ପାତେ,

କୁଟୀର ଅଙ୍ଗନେ ଦିଅ ଗୋ ଲେଖି ରୂପ,
ମାନସେ ଦିଅ ଭରି ଅଗୁରୁ ବାସ ଧୂପ;

ଗୁହ୍ନଁ ଗୋ ବରଷାର ମୃଦୁଳ ସପାତେ,
ଝୁଲଇ ଯୂଥୀ କାନେ ନିଶୀଥ ଇଙ୍ଗିତେ,
ଆସ ଗୋ ଆସ ରାଣୀ ପ୍ରଦୀପ ଧରି ହାତେ,
ଏ ମୋର ଅଭିସାରେ ଶ୍ରାବଣ ସଙ୍ଗୀତେ ।

ଉଷା—୭
୮-୧୦-୪୩

---

୨

## ହେ ରାଜପୁତ୍ର !

ମହାକାଳ-ଖରସ୍ରୋତେ ଭାସିଯାଏ
ଲକ୍ଷ ଲକ୍ଷ ତରୀ—
କୋଟି କଣ୍ଠୁ ଫୁଟିଉଠେ ସୁଖଦୁଃଖ
ସଙ୍ଗୀତ ଲହରୀ;
କେହୁ ବାହେ ଜୀର୍ଣ୍ଣତରୀ ଆପଣାର ,
କରୁଣ ବିଳାପେ —
କେହୁ ପୁଣି ସ୍ୱର୍ଣ୍ଣଭେଳା ମନଭୁଲ
ମଧୁର ଆଳାପେ;

କାହା ହାତେ ତୈଳଦୀପ ପ୍ରଜ୍ୱଳନ,
                    କିନ୍ତୁ   ଅକଂପିତ,
କାହା ଶିଖା ଜଳଉଠେ, କ୍ଷଣିକେକେ
                    ହେବ  ନିର୍ବାପିତ ।
ସକଳେ  ଚଳନ୍ତି  ବାହି  ଅନନ୍ତ—
                    ସାଗର-ପାରାବାରେ—
କବି-ମୂକ, ଉଚ୍ଚ-ନୀଚ, ରାଜା-ପ୍ରଜା
                    ଏକ ପଥ-ଧାରେ ।

କା'ର ମାର୍ଗେ ନାହିଁ ଡାକ 'ବଜେ କର
                    ମହିମା    ମହିମା',
କେହୁ ପାଏନା ସ୍ୱାଗତ 'ଆସ କବି
                    ଶୃଙ୍ଗାର  ବର୍ଣ୍ଣିମା';
ମଦମତ୍ତ  ନରପତି  ଭୋଗିବା,
                    ପେଷିବା  ଚରାଚର,
କାବ୍ୟଛଳେ କହିପିବା ସୁନ୍ଦରକୁ
                    କହି    ଅସୁନ୍ଦର;

ଦେଶର ସକଳ ନାରୀ ପ୍ରେୟସୀ
                    ଯେହେତୁ ସେ ଭୂପତି—
ପରକୀୟା ପ୍ରୀତି  ପୁଣି  ଭୋଗ୍ୟ
                    ରଚିବାକୁ ସୁଖ-ରତି—

ଏସନ ଭାବଇ କେହୁ ବୃଥା କଥା—
ପଥ-ଉପଚାର—
ସକଳେ ଏକଇ ପଥେ ଚାଲିବେ
ମୁଣ୍ଡାଇ କର୍ମଭାର ।

ଜଣାନିକି ନଶ୍ୱର ଏ, ଅନିତ୍ୟ ଏ,
କ୍ଷଣିକ ସଂସାର—
ମରମମଧ୍ୟେ ଥିବ କାହୁଁ ଅମୃତର
ଶାଶ୍ୱତ ବେଭାର ?
ମିଥ୍ୟା ଏ ଧରଣୀ; ଏଥି ପୁଣି କାହିଁ
ସରଳ ବଣିଜ ?
ଖୋଜିଲେ ମିଳିବ କାହୁଁ ? ସୁଧା—
ବିଷମୟ ଏ ଖଣିଜ ।

ସରଳତା ଅନ୍ତରାଳେ ଲୁଚିରହେ
ହୀନ କୁଟିଳତା—
ବାରିଦର ଗର୍ଭେ ଯଥା ଅଶନିର
ଆତ୍ମ-ଗୋପନତା ।
ଦୀନତା ଦେଖାଇ ନର ମନେ ମନେ
ଲଭେ ଅହଂକାର,
ବିଶ୍ୱ-ମୈତ୍ରୀ ବ୍ୟାଜେ ପୁଣି ଘଟାଏ
ଜଘନ୍ୟ ବ୍ୟଭିଚାର ।

ଦୁଃଖ-ଶୋକ, ଜଣା-ଶୁଣା; ଅଜଣା ବା
ତହିଁରେ କ ଅଛି ?
ତଥାପି କପାଇଁ ନର ଅହେତୁକ
ଆଶାରେ ଗୁହୁଁଛ ?
ଗୁହୁଁ ଗୁହୁଁ ଶୁଖିଯିବ ଏ ଜୀବନ—
ବହନ୍ତ-ନଈ'ର—
ପ୍ରିୟ ସଙ୍ଗେ ମିଶିବାକୁ ଆଉ କାହିଁ
କହ' ଅବସର ?

ଏ ଦୂର ପ୍ରବାସେ ବିତିଗଲାଣି
ଅଗଣିତ ବତ୍ସର—
ଖୋଜ ଖୋଜ ଥକଲିଣି ପାଂଥ କାହିଁ
ଆତ୍ମ-ସହୋଦର ?
ସକଳ ମାନବ କହେ, 'ତୁହି ମୋର
ହୃଦୟ ସଖା'—
କାହିଁ, କେହୁ ତାର ଦୁଃଖ ନ ନଏ ତ
ସମାଦରେ ହର ?

ସକଲେ ଗୁହଁନ୍ତ ତା'ରେ ଆଶାଭରା
ସତୃଷ୍ଣ ନୟନେ—
ବୁଝି ସେ ନପାରେ ତତ୍ତ୍ୱ-ଆନନ୍ଦେ ବା
ଗ୍ରାସିଦେବା ମନେ ।

କେମନ୍ତ କହ ବୁଝିବ ସଂସାରର
ଇନ୍ଦ୍ରଜାଲ-ଛାୟା ?
କହ କହ ରାଜପୁତ୍ର ଯେ ବର୍ଜିଛି
ପ୍ରେମ-ଧନ-ମାୟା—

ଯେ ମଣିଛ ତୁଚ୍ଛ ଆହା ସୁବିଶାଳ
ରାଜ୍ୟ-ବଇଭବ—
ହୃଦମଣି-ପ୍ରିୟତମା, ସଦ୍ୟ-ଶିଶୁ
ସ୍ନେହ ଅନୁଭବ—
ଯେ କହିଚ 'ସହୋଦର ! ଆଣ ଯାଇ
ମୁଠାଏ ସର୍ଷପ—
ଯା'ର ଛୁଟେ ପଡ଼ିନାହିଁ ଆଜନମୁ
ମୃତ୍ୟୁର ତଳପ ।'

ସେଇ ମୋର ଗୁରୁଦେବ, ସେଇ ମୋର
ପରମ ଦେବତା—
ତା'ଙ୍କୁ ଆଜି ଡାକେ ମୁହିଁ କଂଠରେ
ଭରି ଆକୁଳତା—
'ହେ ଦେବ ! ଗୁରୁ ! ଆରାଧ୍ୟ ! ଏ ଦୁଃଖୀର
ପ୍ରାଣ-ପ୍ରିୟତମ !
ଦେଖାଇ ଦିଅ ହେ ମୋତେ ସତ୍ୟ-ଶିବ-
ସୁନ୍ଦର-ପରମ ।

ଲୋହିତ-ଗୁଂଠନ

ନିରନ୍ତର ବିଛଂଧିତ ପ୍ରପଂଚର
ମାୟା-ବଂଧ-ରାଗେ—
ପଞ୍ଜରୀ-ବେଷ୍ଟିତ ରୁଦ୍ଧ ବିହଂଗମ
ଆଜ ମୁକ୍ତି ମାଗେ ।
ଟାଣିନିଅ ଊର୍ଦ୍ଧ୍ୱେ ଦେବ, ଡାକେ ପାପୀ
ଆର୍ତ୍ତକଣ୍ଠ ସ୍ୱରେ,
ବଳ ପଡ଼ିଲାଣି ବାଧା କଲ୍ମଷ ଏ
ଗହନ ଧରାରେ ।

ତୁମେ ପ୍ରଭୁ ଦୟାମୟ, ପ୍ରିୟବଂଧୁ,
କୃପା-ଅକୂପାର,
ବେଦ-ମନ୍ତ୍ର, ଜପ-ତପ ସବୁ ଲାଗେ
ଜଟିଳ ଅସାର ।
ତୁମ ମଧୁ-ଗୀତି ଗାଇ ଅଂବପାଳୀ
ହେଲା ଭାଗ୍ୟବତୀ,
ପୁରନ୍ଦର ଗଉତମୀ ଲଭିଥିଲା
ଅନନ୍ତ ମୁକତି ।

ସେଇ ତୁମେ ଅବନ୍ଦିତ, ସୁମହାନ୍,
ସକଳ-ଆଧାର—
ଘେନ ଆଜି ପଦତଳେ, କବିର ଏ
ନମ୍ର ନମସ୍କାର ।

ଗୋଧୂଳି—୫
୨୯-୧୦-୫୧

---

## ଉଷାର ଉତ୍ତର

ନଈ ଆରପାରେ ଗାଇ ଉଠିଲେଣି
ଚନ୍ଦ୍ର ମିଳନ-ଗୀତ
ନୂତନ ଛନ୍ଦେ ଶୁଭ୍ର ନଭସେ
ଜାଗିଲାଣି ମଧୁପ୍ରୀତି;

ଧରଣୀପ୍ରାନ୍ତେ ଉଷାର କନକ ଆଖି
ଛୁଇଁଲାଣି ଧୀରେ ଅବନୀର ଗୁରୁଗଣ୍ଡ;
ଏକଇ ପକ୍ଷୀର ପ୍ରତ୍ୟୂଷ ମୃଦୁ ବାଣୀ
ଶୁଭିଲାଣି, ଫୁଲେ ପରିମଳ ଛୁଟିଲାଣି;
ଶାନ୍ତ ସକାଳେ ନଶିଥିଲା ଆସେ ପାନ୍ଥ—

ବନ୍ଦାଇଦିଅ ତରଣୀ ଗୋ ସଖି !
ଅନନ୍ତେ ଯିବ ବାନ୍ଧି ।



3

ସଖି ତୁ ଯେ ମୋର ଚିର ଅଭିନବ ସାଥି,
ଯେତେ ପୁରୁଣାରେ ସେତେ ନୂଆ ତୋର ପ୍ରୀତି;
ନିତି ନିତି ଆଗେ ଉଭା ହେଉ ନୋଇଁ ମଥା,
ଆଖିପତା ତଳେ ଲୁହାଇ ମନର କଥା;
ଓଠେ ତ ନଥାଏ ଅଥପ୍ରିତ ପରଶନ—
ବୁକେ ଦେଉ ସଦା ପହ୍ୱିଲର କଂପନ;
ମିଳନ ଆଜିକ ଦୀର୍ଘ ବରଷ ପ୍ରାପ୍ତ—
ତଥାପି ମୁଁ ତୋର ବାସର କାନ୍ତ ପ୍ରିୟ;
ରହିବ ଲୋ ସଖି ରହିବ ସେ ନବୀନତା—
ଯୁଗାନ୍ତ ସୁଦ୍ଧା ତାଳଇ ପରାଣେ
ଅଖଣ୍ଡ ସରସତା ।

ହସିଲାଣି ରସା ଦିଶିଲାଣି ଜଳଜଳ,
ଦିଗ ଦରପଣେ ପ୍ରକୃତି ଢଳ ଢଳ;
ଡାହୁକ ଡାକିଲେ ବନ୍ୟାସ ଲମ୍ବି ଦେଇ,
ଭୃଙ୍ଗ ପଶିଲା ନଳିନୀ ପାଖୁଡ଼ା ଫେଇ,
ପାହିଲାଣି ରାତି ଶୁଭିଲାଣି କଲକଳ,
ସସୀମ ଗୋ ଆଜ ଅସୀମରେ ଛଳଛଳ,
ଦିଅ ଗୋ ମେଲାଣି ଯାଉଚ ସିଂଧୁକୂଳେ,
ଭସିଲାଣି କେତେ ସୁନାର ତରଣୀ
ଊର୍ମିର ଚୂଳେ ଚୂଳେ ।

ସଖି !
କୁଣ୍ଠିତ କପାଁ ଗୋ ?
ହେଲ ଯେ ମଉନା—
ଅଫୁଟା ରହିଲ ଫୁଲ କାହିଁ ଲଜ ସ୍ପନ୍ଦନେ,
ଅଚଖା ରହିଲ ମଧୁ କାହିଁ ମନ-ଗୋପନେ,
ଅଗୁଆ ରହିଲ ଗୀତ କାହିଁ ଲଜ ପାଇ,
କର ନାହିଁ ସଖି ଶୋଚନା ସେଇଥି ପାଇଁ;
ଉତ୍ତରେ ପ୍ରିୟା ଧରଣୀ ତଳକୁ ଚାହିଁ—
'ସେ ସବୁ ଯେ ପ୍ରିୟ ସେ ସବୁ ଆମର
ଆସନ୍ତାକାଲି ପାଇଁ ?'

ଉଷା—୭
୩-୨-୫୨

## ଅସ୍ଫୁଟିତା

କାହିଁ ଚଲି ଦେଇ ପରିଚୟ,—
ନନେଇ ସେ କିଛି ବିନିମୟ,
କାହାର ଏ ଦାନ ? କପାଇଁ ଏମାନ ?
ଗଲି ଦେଇ କେଉଁ ସମ୍ମାନ—
ଛୁଟାଇ ପୀରତି ବଂଧନ ।

କ୍ଷଣକର ଦେଖା ମଧ୍ୟେ ଦେଲି ସେ
ସଙ୍ଗୀତେ ମୃଦୁ ଲୟ,
ବସୁଧା ରଂଗ- ମଂଚେ କଲି ସେ
ମନଭୁଲି ଅଭିନୟ,

## ଲୋହିତ-ଗୁଂଠନ

ସ୍ମରଣ-ସୂତ୍ରେ ଗୁଂଥିଲି ପ୍ରୀତି—
ଫୁଲ କରି ଅବଚୟ,
କାହିଁଗଲି ଦେଇ ପରିଚୟ ଆହା
ନ ନେଇ ସେ କିଛି ବିନିମୟ ।

ତାପରେ କେ କହିଲି ପୋଛି ଦେବା ପାଇଁ
ଜୀବନର ସାରା ଦୁଷ୍କୃତି ?
ଅନ୍ତରେ ନିତି ଫେନବା ପାଇଁ କି
ଅଶ୍ରୁ-ଗାଂଗଜଳ ଶ୍ରୁତି ?
ସ୍ପଂଦନ ତଳେ ମର୍ମର ଉଠେ
ବିଷାଦର ମଧୁ ସଂଚୟ,
କାହିଁଗଲି ଦେଇ ପରିଚୟ .ଆହା
ନ ନେଇ ସେ କିଛି ବିନିମୟ ?

ବର୍ଷଣ ଘନ ତିମିର କକ୍ଷେ
ଚହିଲା ଆଲୋକରଂଗଣି;
ସୃଷ୍ଟିର ଦୂର ବନାନୀ ବକ୍ଷେ
ଜୀବନର ଆଦି ସ୍ପଂଦନ,—
ରେଖା ତଳେ ତଳେ ବଂଦାଇ ଗଲି—
ସଧା ହେଲି ଜ୍ୟୋତିର୍ମୟ,
କାହିଁଗଲି ଦେଇ ପରିଚୟ ଆହା,
ନ ନେଇ ସେ କିଛି ବିନିମୟ ?

## ଲୋହିତ-ଗୁଂଠନ

ପ୍ରଥମ ନିଶୀଥେ  ମଧୁର ମିଳନେ
ଅସ୍ଫୁଟ ତାର ଉପାସନା,
ଯୁଗ ପରିଚୟେ  ନିତ୍ୟ ନୂତନା—
ପ୍ରାଚୀନା ଅଥଚ ସେ ନବୀନା ।
ଅଜ୍ଞାତ ପ୍ରାଣର  ଗ୍ରଥିତ କାହାଣୀ
ପୀୟୂଷସିକ୍ତ ସ୍ୱପ୍ନ,
କାହିଁଗଲା ଦେଇ  ପରିଚୟ ଆହା
ନ ନେଇ ସେ କିନ୍ତୁ ବିନିମୟ ?

ଅତଂଦ୍ର ସ୍ମୃତି  ପଥେ ଜାଗେ ଆଜି
ଆହା ସେ ପ୍ରତିମା କମନୀୟ,
ତଂଦ୍ରା ଜଡ଼ିତ  ଇତିହାସ ତାର
ଦେଖାଇ ଗଲାଚି ଅଭିନୟ,
କାହିଁଗଲା ଦେଇ  ପରିଚୟ ଆହା
ନ ନେଇ ସେ କିନ୍ତୁ ବିନିମୟ ?
ବନ୍ଧୁ ଗୋ ମୋର  ଜୀବନ-ଆକାଶେ
ସ୍ମରଣର ଆଜି ମହୋଦୟ ।

ପ୍ରଭାତ—୮
୯-୪-୪୫

---

# ଶିଳ୍ପୀର ଅଭିମାନ

ମନ-ଫଳକେ ଆଜ ତବ ରୂପ-ରେଖା,
ସ୍ନେହେ ରଚିବାକୁ ପଡ଼େ ନୟନେ ଦେଖା,
କହିଗଲ ମାନସୀ,
ଦୂର ଦେଶେ ହରଷୀ,
କେଉଁ କଳା ବିକାଶେ,
ତନୁ ଘଷି ନିକଷେ,—
କଳାକର ତ ମୁହିଁ, ଦେଇ ପାଣ୍ଡୁଲେଖା,
ମନ-ଫଳକେ ଆଜ ତବ ରୂପ-ରେଖା ।

କେଡ଼େ ରଭସେ ଆଜି ସେ ଯେ ପରଖିଗଲା,
ମୋର ତୂଳୀରୁ ସୁଧା ଅବା ବିଷ ଖସିଲା,
ତୁମ ପୀରତି ଝର,
ତଳେ ବେଦନା ଗାର,
ଘନେ ରସର ଧାର,
ତହିଁ ସ୍ମୃତି-ଭଦୁର,
ନଦୀ ଶତ ପଠେ ମାର ବନ୍ଧ ତ ଗଲା,
କେଡ଼େ ରଭସେ ସେ ଯେ ଆହା ପରଖିଗଲା ।

ଆଜି ପ୍ରତିଭା ମୋର ଜୟ କିବା ଅଜୟ,—
ତାରେ ଶଙ୍କା ମୁହିଁ କରୁ ନାହିଁ ତ ଭୟ,
ଦୁଇ ନୟନ ନେଇ,
ଯାହା ଦେଖିଛ ମୁହିଁ,
ରୂପ ଦେଇଛ ତାରେ,
ସ୍ନେହ ତୂଳିକା ଗାରେ,
ଗୋଟି ଗୋଟି ବେଦନା ଫେଇ ଫେଇ ହୃଦୟ,
ଆଉ ଶଙ୍କା ମୁହିଁ କରୁନାହିଁ ତ ଭୟ ।

## ଉଷାନଳନ

ଉଷା-କାଳର ତରୁଣ ତପନରେ,
ଲଜ୍ଜା - ଅରୁଣ - ଲସିତ ବଦନରେ,
ସଜ୍ଜ ଉତ୍ପଳ ଫୁଟୁଥିଲ୍ ଧୀରେ,
ନେଲ୍ ବୃଂତ କାଟି ବା କଏ ତାରେ ?

ଧନେ ବସାଇ ଅଙ୍କେ ଅନୁରାଗେ,
ଅଳ୍ପ ଆଳାପ କରନ୍ତ ନବରାଗେ,
ସୁଖ ସଂଚରତ ପ୍ରୀତି ରତି ଭଲେ,
ମଧୂ-ଚୁମ୍ବନ ଦେଇନାହିଁ ଗାଲେ ।
ଫେର ପାଇନ ପ୍ରଣୟୁ ଅନ୍ତରେ,
ନେଲ୍ ବୃଂତ କାଟି ବା କଏ ତାରେ ?

ଯବେ ତା' ମୁଖ ସୁଷମା ଚଳେ ଆଖି,
ଭକ୍ତ ଉଚ୍ଛ୍ୱାସ ରହି ନାହିଁ ଲଖି;
ନୂଆ ଛଇଲ ବ୍ରୀଡ଼ାର ବାଧା ପାଇ,
ଅନୁରାଗ ଭରେ କେବେ ଲୁଚ ନାହିଁ,
ଆଗଭର ତ ହୋଇନ ପ୍ରୀତି ଘରେ,
ନେଲା ଗୁଂଠ କାଟି ବା କଏ ତାଂରେ ?

ଯବେ ସକାଳ ସମୀର ପ୍ରବାହରେ,
ଥିଲା ସୁରଭି-ତଳପ ନିଦଭରେ;
ନଶି ବରଦେ ଅବଶ ମୁଖ ଗୁରୁ,
ହସି ଉଠୁଥିଲା ଲତା ଆଡ଼ୁଆଳୁ;
ଧିରେ ଉଠାଇ ଦେଲି ତା ଧଣ ବାହୁ,
ଉଠି ଲଜ୍ଜାରେ ଥରିଗଲା ସେହୁ;
କର ବୁଲାଇ ଆଣିଲି ଓଠେ ତାର,
ବ୍ରୀଡ଼ା ପାଇ ସେ ସଧୀରେ ହସିବାର;
ମନ ପୂରାଇ ଦେଖି ତ ନାହିଁ ଥରେ,
ନେଲା ଗୁଂଠ କାଟି ବା କଏ ତାରେ ?

ପାଇ ନାହିଁ ସେ ମଧୁର ସ୍ନେହାସନ,
ଲଭି ନାହିଁ ତା' ହୃଦୟ ସ୍ପନ୍ଦନ;
ଥରିନାହିଁ ତା' ପୁଲକ ଭରେ ତନୁ,
ପୀଡ଼ା ଲଭିନ ମଥାର ଘରେ ଜାନୁ;

କଣ୍ଠୀ ମାଳ ଧଣ୍ଠୀ ଖସିନାହିଁ ବାରେ,
ନେଲା ବୃନ୍ତ କାଟି ବା କଏ ତାରେ ?

ସେଇ ସ୍ୱପ୍ନିଳ ଗୁରୁ ହୃଦ ଆଜି,
ଭାଜି ପଡ଼ଇ ବେଦନା-ଘାତ ବାଜି;
ନଇଁ ଆସଇ ବଦନ ହରସରେ,
ନୂଆ ପ୍ରୀତି କି ମୂର୍ତ୍ତି ଦେଇପାରେ ?
ଫଳ ଆସିବା ପ୍ରଣୟ-ଲତା ଧୀରେ,
ଛେଦ ବିଚ୍ଛେଦ ଦେଲା କେ କପାଳେ ?
ସଜ ଉତ୍ପଳ ଫୁଟିଥିଲା ଧୀରେ,
ନେଲା ବୃନ୍ତ କାଟି ବା କଏ ତାରେ ?

ସଜ ଉତ୍ପଳ ଆଜି ଗଲା କାହିଁ ?
ଫୁଟି ଆସୁଥିବା ଫୁଲ ଲାଜ ପାଇ,
ତାରେ ଚୁମ୍ବିନ ତ ବାରେ ସମୀରଣ,—
ବାସ କରିନ ତ କେହି ଆଘ୍ରାଣ ।
ସେ ତ ପକ୍ଷ ମେଲିନ ନୀଳ ଜଳେ,
କାହିଁ ହଜିଗଲା କାଳ ଆଡୁଆଳେ,
ସେ ତ ଯାଇଚି ମଉନ ମୃତ୍ୟୁମାଣେ,
ତା'ରେ ଭାଳଇ ତପନ ଅନୁଦିନେ;—
ନିତି ଉଇଁ ସେ ଶୁଭ୍ର ପରଭାତେ,
ତାରେ ଅର୍ଘ୍ୟ ଢାଳଇ ଅବିରତେ,

ତାର ଆଗମନ ପଥ ଗୃହ୍ନିଁ ନିତି,
ଢ଼ାଳେ ମିଳନ ପଥରେ ମଧୁ ପ୍ରୀତି,
ସେ ତ ଲେଉଟେନା ଆଉ ଅଭିସାରେ,
ନେଲ୍ ବୃଂତ କାଟି ବା କଏ ତାରେ ?

---

## ବାପୁ ତର୍ପଣ

ହେ ଯୁଗ-ଜନ୍ମା ହେ ଯୋଗ-ଜନ୍ମା
ମହାନୁଭବ,
ହେ ଜାତି-ଦେବତା ଧାତ୍ରୀ-ଦେବତା
ବିଶ୍ୱ-ଧବ!
ମରଣ ହାରିଚି— ମରଣେ ଅମର
ତମେ ବାପୁଜୀ;
ତୁମରି ଚରଣେ ମରଣ-ଦେବତା
ଶରଣ ଆଜି !

ବାପୁଜୀ ! ବାପୁଜୀ !   ସତେ ଗଲ ଗୁଳି
ଆମକୁ ଛାଡ଼ି !
ସରଗ ଧାମରୁ   ଦେବଦାସୀ ଆସି
ନେଲେ କି ଭିଡ଼ି ?
'ବାପୁଜୀ ବାପୁଜୀ'   ଡାକ ଦେଲେ ଆଉ
ଶୁଣିବ କେହି,
କାହାର ଆଗରେ   କହିବୁ ଗୁହାରି
ଛାତି ଫିଟାଇ ?

ଯେ ଥିଲ ସେ ଥିଲ,   କାହିଁ ଦୂରେ ଗଲ
କୁଆଡ଼େ ଅବା;
କାହାକୁ କହିବା   କପାଳରେ ସିନା
କର ମାରିବା ।
ଆଉ କି ପାଇବୁ   ଭୁଜେ ମୃଦୁ ହାତ
ଦେବା ପରଶ ?
ମଥା ହଲା ପୁଣି   ମଧୁର ବଚନ
ବଦନ ହାସ ?

ଯେତେ ସବୁ ଆଶା   ପୋଷିଥିଲ ବାପୁ
ଅସୀମ ବୁକେ,
ଚିର ଅପୂର୍ଣ୍ଣ   ରହିଗଲା ସେ ଯେ
ଅଲଭ୍ୟ ଶୋକେ ।

ଭାବିଥିଲ କାହିଁ   ଭାରତ ଭୂଇଁରେ
ବୁଣିବ ସୁନା,
ଘୁଂଚିବ ବୋଲି   ସନ୍ତାନଗଣ
ନିର୍ଯ୍ୟାତନା ।
ଘୁଂଚିଗଲ ତ   ଶୁଭ୍ର କମଳ—
ଜୀବନ ଆହା,
ଭାରତ-ଯଜ୍ଞ   କୁଣ୍ଡେ ଦେଲ ହେ
ଜୀବନ-ସ୍ୱାହା ।

ଆଜଠୁଁ ପୁଣ୍ୟ   ଭାରତେ ଧର୍ମ
ହୋଇଛି ଲୁପ୍ତ;
ଦିଲ୍ଲୀ ଧୂଳିକୁ   ସିକ୍ତ କରିଛି
ତୁମର ରକ୍ତ ।
ଭାରତ ମିହିର   ଶୋଣିତ କରଣେ
ଗଲ ରେ ଲିଭି;
ଶେଷ ଦିନ ପାଇଁ   ଢଳିଗଲେ ଆମ
ଜୀବନ-ରବି ।

ନିଖିଳବିଶ୍ୱ   ଲୋତକାଂଜଳି
କରେ ଅର୍ପଣ;
ଅଶ୍ରୁ ସେ ନୁହେ   ଜୀବନ ଅର୍ଘ୍ୟ
ଲହୁ ତର୍ପଣ ।

ଲୋହିତ-ଗୁଂଠନ

ହେ ଦେଶବନ୍ଧୁ        ହେ ଜନବନ୍ଧୁ
ଫକୀର ଇନ୍ଦ୍ର
ଆହେ ମୋ ଦେଶର        ପ୍ରଜା ରଂଜକ
ଶ୍ରୀ ରାମଚନ୍ଦ୍ର !

ଦେଶପାଇଁ ଆଜ        ସହିଗଲ କେତେ
ନିର୍ଯ୍ୟାତନା;
ଜୀବନ ରକ୍ତ        ଅଜାଡ଼ି କଲ ହେ
ଦେଶ ଅର୍ଚ୍ଚନା ।
ଶାନ୍ତି ଯାହାର        ନିତ୍ୟ ପ୍ରଚୁର
ବିଶ୍ୱଜନେ,
ସତ୍ୟ ଓ ନ୍ୟାୟ        ପ୍ରତି ବିଶ୍ୱାସ
ଯାର ଜୀବନେ ।

ଧର୍ମ ଯାହାର        ପ୍ରତି ପଦକ୍ଷେପେ
ଥିଲା ହେ ଧୂଆ,
ଅଧର୍ମ ତାର        ଫଟାଇଛ ଆଜ
କୋମଳ ହିଆ ।
ଧିକ୍ ଗୋ ଧରଣୀ        ଧିକ୍ ତୋ ଜନମ,
ଧିକ୍ ତୋ ମୁଖ !
କାହାର ଶୋଣିତ        ଅଜାଡ଼ି ଆଜ ତୁ
ପିଇଛୁ ଦେଖ ?

ଧର୍ମପୁତ୍ର ସାଟିଏ ପଶାଖେଳ
ଖେଳିଲୁ କିଆଁ,
ନଥିଲ୍ କି କିଛି ହୃଦୟେ ତିଳେକ
ମମତା ଆହା !
ଏ କି ପ୍ରତିଦାନ ବାପୁଜୀଙ୍କୁ ତୋର
ହେଲ୍ କି ଆଜି ?
ଆପଣା ଜିହ୍ୱା ଛେଦନେ ଗୁଳିରେ
ପଡ଼ିଲ୍ ଲହୁ !

ଗୁଳିରେ ବାଜିଲ୍ କାହାର ସେ କିଛି
ବଜ୍ର ଗୁଳି,
ତୋର ବା ତାହାର କହରେ ତୁ ଆଜି
କହରେ ଖାଲି !
କଳଙ୍କ ଧୋଇ ଲଭିବ ବା କାହିଁ
ପରାଣ ଥାଉଁ ?
ବାପୁଜୀ ଗଲ୍ ରେ ଅଭାଗା ଭାରତ
ଭାଗ୍ୟ ଲହୁ !

ଯାଇଛନ୍ତି ବାପୁଜୀ ଚିରଦିନ ପାଇଁ ୨
ବିଜୟୀ ରଥେ,
ତିମିର ପାଶରି ଦେନ ଉତ୍ତରୀ
ଭାରତ ପଥେ ।

ତେଣୁ ବାପୁ ତବ କଂଠେ ଢାଏ ହେ
ପୁଷ୍ପ ହାର,
ସୁଧା ମିହିର ଢାଳଇ ସାଗରେ
ଗଂଗା ଧାର ।

ଆହେ ଅବତାର, ଯୁଧିଷ୍ଠିର ହେ
ଶ୍ରେଷ୍ଠ ରଥୀ—
ଅହିଂସା ଯା'ର ମଂତ୍ର ତଂତ୍ର,
ଜୀବନ-ସାଥି !
ଆଜି ସେ କେମନ ହିଂସା ଆଘାତେ
ପଡ଼ିଚି ଢଳି;
କୋମଳ କଳଜା ତଳରୁ ରୁଧିର
ଯାଉଚି ଗଳି ।

ଆସ ଆସ ଝଡ଼, ଅଣଂଗୃଣ ହେ
ଆସ ହେ ବାତ୍ୟା !
ଆସ ଦାବାନଳ, ଆସ ଧୂମକେତୁ,
ଦେଖ ହେ ହତ୍ୟା !
ଆସ ଆସ ଶନି, ବଜ୍ରାଗ୍ନି ହେ
ଆସ ଭୂକଂପ !
ଆସ ହେ ଉଲ୍‌କା, ଆକାଶବକ୍ଷୁ
ଦେଇଣ ଲଂଫ !

ଆସ ଧୂର୍ଜଟୀ ପିନାକ ହସ୍ତେ
ରୁଦ୍ର ବେଶେ;
ଲଲାଟ ଫଳକେ ବଡ଼ବାଗ୍ନି
ଜଳାଇ ହାସେ ।
ଗଗନେ ସୂର୍ଯ୍ୟ ଚନ୍ଦ୍ର ତାରକା
ଲୁଗୃଇ ଖରେ;
କଂପାଇ ଆସ ନିଖିଳ ବିଶ୍ୱ
ଶଂକା ଭରେ ।

ପୃଥ୍ୱୀ ଭୂତଳ ଗଗନ ପବନ
ଭୁବନ ଆସି,
ତର୍ପଣ କର ବାୟୁଜ୍ଞାର ଆଜି
ସକଳେ ମିଶି ।

## ପ୍ରୀତିଦାନ

ରହିଗଲା ମନେ          ଅକ୍ଷତର ସେଇ
ମଉନ ପୀରତି  ଲେଖା,
କେଉଁ ଅନୁଭବ          ପାଇଁ ଲୋ ସଜନୀ
ଦୁଇବରଷର   ଦେଖା,
କାଂପା ଏ ଭଙ୍ଗାରୁଜା—
ସୃଷ୍ଟିର କେଉଁ          ଗୌରବ ବଢ଼େ
ପଡ଼ୁନାହିଁ ମୋତେ ବୁଝା ।

ଦୁଇ ବରଷର ଲାଜଲାଜ ଉଷା ଠାଣି,
ଅବନତ ଶିରେ ଦରଦର ମୃଦୁବାଣୀ,
ଚିବୁକ ପ୍ରାନ୍ତେ କଂପନ ମଧୁରିମା,
ଲିଭି ତ ନଥିଲ୍ କପୋଳରେ ଅରୁଣିମା,
ଅନାଉଣୀ ତଳେ ବିନମ୍ର ଆକୁଳତା,
ହସ୍ତକମଳେ· ସ୍ୱେଦ ବାରି ସିକ୍ତତା,
ନଥିଲ୍ ତ ଘେରି କଟୀତଟେ ଅଞ୍ଚଳ,
ନାଚିକାଟି ଶେଷ ହେଲ୍ କେଡ଼େ ଚଞ୍ଚଳ,
ପଡ଼ିଗଲ୍ ଯବନିକା,
ସରିଲ୍ ଗୋ ସଖି ପୀରତି ବେଭାର
ହୃଦୟର କଣାବିକା ।

କେଉଁ ଦେଶର ଗୋ କେଉଁ ସେ ଅଜଣାବତ୍ତା,
କାହାପାଇଁ ମୋଦେ ଜଳାଏ ସେନେହ ବତ୍ତା,—'
କର୍ପୂର ଧୂପ ଚନ୍ଦନ ବାସ ସୁତେ,
ଅଗୁରୁ ଗଂଧ ଆହ୍ଲାଦଭରା ଚିତେ,
ନିତି ନିତି ବାଳା ନିଶି ଉଜାଗର ବସି,
ଶିବ ମସ୍ତକେ ଚଂପା ଚଢ଼ାଏ ହସି,
ସାଧନାରେ ପଡ଼େ ସଙ୍କଟ ବାରବାର,
ତଥାପି ସେ ଧୀର ବାଢ଼ି ଦିଏ ସମ୍ଭାର,
ଝରେ କଲ୍ୟାଣ ବାରି—
ଦୁଇ ଦେଶର ସେ ଦୁଇଟି ହୃଦୟ
ମିଶିଯାଏ ଥରଥର ।

ଲୋହିତ-ଗୁଂଠନ

ଅଜଣା ଅଶୁଣା ଅଦେଖା ଅପରିଚିତ,
ଝଲକରେ ପୁଣି ହୁଅଇ ପରମ ମିତ,
ପ୍ରୀତି କଷଟିରେ ଚାଲେ କେତେ ଲେଖାଲେଖି,
ଝିକାଝିକ ପୁଣି ସୁନ୍ଦର ଦେଖାଦେଖି,
ଠାହୁଲ ଠାପର ଅନୁରାଗ ଦେନାଦେନ,
ଦୁଇଟି ଦେଶର ପୃଥକ ହୃଦୟ ବେନ,
ନିଜଲୋକ ଛାଡ଼ି ପର ହେଲ ଆପଣାର,
କାହା ଗଢ଼ା ତନୁ ପଡ଼ିଲ ଚରଣେ କାର ?
ବଚନ ପରକାଶ,
ବିଦାୟର ପଥେ ମିଳନ ମାଧୁରୀ
ଅଶ୍ରୁରେ ପୁଣି ହାସ ।

ମଧୁର ଛନ୍ଦେ ନାଚେ ଯେବେ ଯଉବନ,
ବସନ୍ତେ ହୁଏ କଳକାର ଆଗମନ,
ଅଧରୁ ଝରଇ ଅମୃତ ଧାର ଧାର—
ପରାଣେ ଆସଇ ପୂର୍ଣ୍ଣତା ସାଧନାର,
ହସଇ ଧରଣୀ ହସିଯାଏ ସଂସାର,
ଶେଷ ହୁଏ ଆହା କ୍ଷଣକର ଅଭିସାର,
ପ୍ରତିଦାନ ସମ ଦେନଯାଏ କେଉଁ ନାରୀ,
କୁଂକୁମ ଝର ଜୀବନକୁ ମୋର ସାରି ।
ଏଥିପାଇଁ କିବା ସ୍ରଷ୍ଟାର ଆୟୋଜନ ?
ଶୁଣାଉଥିଲ ସେ ଶୁଭ ଶଂଖର ସ୍ୱନ ?

ମୁରଲୀ ରଂଧ୍ରେ ଫୁଟାଇଥିଲ ସେ ରାଗ ?
ଜୀବନ ସାଥିରେ ରଚିଥିଲ ଅନୁରାଗ ?
କ୍ଷୁଦ୍ର ସେ ଅଭିନୟ
ତଥାପି ପରାଣେ ରଖିଗଲ କେଉଁ
ଶତ ଯୁଗ ପରିଚୟ ।

•

ଆଜି ବୃକ୍ଷ ତାରେ ଭାବନା କରେ ମୁଁ ନିତି,
ନୀଡ଼ଫେରା ପକ୍ଷୀ କଂଠେ ଜାଗଇ ପ୍ରୀତି,
ଅସ୍ତ ରବିର ପାଂଶୁଳ ଡେଣା ତଳେ,
ସନ୍ଧ୍ୟା ଭାବନା ଫୁଟଇ ତାରକା ମେଳେ,
ଆତୁର ଧେନୁକା ଫେରଇ ସ୍ତନଂଧୟେ,
ଥରଇ ଆଳତି ଜୀର୍ଣ୍ଣ ଦେବତାଳୟେ;
ଅଳସ ଚକ୍ଷୁ ଡେଣାକୁ ମୁଦଇ ଜଳେ,
ବହ୍ନି ବାଜଇ ତପ୍ତ ମୋ ତନୁ ତଳେ,
ବନବୁକେ ଶୁଭେ ମୃଗୁଣୀ ପ୍ରସବ ବ୍ୟଥା,
କଂଠେ ମୋହର ଫୁଟେ ନାହିଁ ଆଉ କଥା—
ଅଖଂଡ଼ ନୀରବତା
ପ୍ରାଣ ସଂପୁଟେ ରହିଯାଏ ହାୟ
ସ୍ନେହ ସିନ୍ଦୂର ଟିକା ।

ଅପରାହ୍ନ—୪
୮—୩—୫୩

## ଗତ ବସଂତ

ନବବସନ୍ତ ଆସିଲ ହେ ଯେବେ ଏ ମୋର କୁଟୀର ଅଂଗନେ,
କେଉଁ କଂପନ ଖେଳାଇ ଦେବ ହେ କହ କହ ତବ ଅପଘନେ ?

ମଉଳି ଯାଉଚି ଜୀବନ ପାଖୁଡ଼ା
ଅଂତର ଆଖି ଲୁହରେ ଖସଡ଼ା,

ତୁମର ନୂତନ ମୃଦୁଳ ଚରଣ ଗୃଳି ପାରିବ କି ଉନ୍ମନେ ?
ନବ ବସନ୍ତ କପାଇଁ ଆସିଲ ଏ ମୋର କୁଟୀର ଅଂଗନେ ?

ବନ୍ଧୁ ହେ ତୁମେ ଭରମେ ପଡ଼ିଲ ଶୁଣି ଆଜି କବା ଜନ କଥା ?
ଏ ମୋର ତନୁରେ ଯୌବନ ଦେଖି ଆସିଲ କ ନୋଇଁ ଫୁଲମଥା ?

ପରଶି ନବୀନ ଘନସମ ହରଷେ,
ମରମେ ମରମେ କୁଳଶ ଯେ କଷେ,

ସ୍ମୃତି ବିନା କେହି ବୁଝି ନପାରିବ ତରୁଣୀ କବର କରୁଣତା,
ବନ୍ଧୁ ହେ ତୁମେ ଭରମେ ପଡ଼ିଲ ଶୁଣି ଆଜି କବା ଜନ କଥା ?

ନିଖିଳ ଜୀବନ ପୀୟୂଷ ଅଜାଡ଼ି ନେଇଚ ଶୂନ୍ୟ କରି ଗ୍ରନ୍ଥି,
କେଉଁ ସମ୍ଭରେ ପୂଜିବି ତୁମକୁ ଉଜାଗର ରହି ଦିବାରାତି ।

ଏଇ ଜନ୍ମର ପ୍ରଣୟ କାହାଣୀ,
ପୋଛୁ ତ ନେଇଚ ଅଶ୍ରୁରେ ଗୁଣି,

ଗୁହାଁଳିକା ସତେ ବୁଝିବାର ପାଇଁ ସ୍ତୁରେ କବା ନାହିଁ ଶତ ପ୍ରୀତି,
ବନ୍ଧୁ ହେ ତୁମ ବକ୍ଷେ ଝରୁ ମୋ ଦଗ୍ଧ ଅଶ୍ରୁ ନିତି ନିତି ।

---

## ସ୍ନେହାସ୍ପଦେଷୁ

ଗ୍ରହଣ କରିବେ ଆନ୍ତରିକ ପ୍ରଣାମ ମୋର ।

ଶରତର ପୂଜା ଅବକାଶ,
ଆକାଶରେ ଶୁକ୍ଳମେଘର ବୁଲଇ ଗୃମର,
ସ୍ନିଗ୍ଧ ଓ ମଧୁର ଏ ସ୍ନେହ ଡ଼ୋର ।
ତଥାପି ହୋଇଛ ଆଶ୍ଚର୍ଯ୍ୟ,
ପାଇ ତବ ସ୍ନେହଲିପି·········
ଶୁଭ୍ର ହସ୍ତାକ୍ଷର ।

ମାଳ ମାହାରିକା ସମ
ମନୋହର ଓ ମେଦୁର ।

ହେ ଆର୍ଯ୍ୟ
 କହୁଅଛ ସତ,
ପତ୍ର ମୋର ହୋଇନାହିଁ ତବ କରଗତ !
ଉତ୍ତର ପାଇନାହିଁ ମୋର ଧୈର୍ଯ୍ୟ
 ଏ ତ ଅଟଇ ଆଶ୍ଚର୍ଯ୍ୟ ।

ବନ୍ଧୁ ମୋର—
 ଅଚ୍ଛି ମନେ
 କରନ୍ତି ବାରେକ ସ୍ମରଣ
 ଅଷ୍ଟାଦଶ ମୁଦ୍ରିତ କଳିକା ଫିଟାଇ;
ପ୍ରଥମେ ଲେଖିଥିଲ ଯେବେ ପତ୍ର
ପଠାଇବା ପାଇଁ ଦୁଇଖଣ୍ଡ ତବ ସଦ୍ୟ ପ୍ରକାଶିତ କିତାବ,
ସେଇ କିତାବର ବୁକେ
 ଦୁଇଟି ମୁକୁଳର ପତ୍ରପୁଟେ;
ଦେଇଥିଲି ଭରି
ଧୂସର ପତ୍ରଟର ଏକ ଝରୀ
ଅନାଇ ମୁଁ ଶରତର ଶୁଭ୍ର ଅବକାଶେ;
ନା—ନା—ନୁହେଁ
ଅନାଇ ପ୍ରାବୃଟ ଆକାଶେ ।

ପାଇନାହିଁ ଝରୀ,
 ଯାଇଛି ସେ ହଜି—
 ଡ଼ାକର ଉଦରେ ହେଲା ବା ହଜମ,

ମେଘ ଗଲା ଗରଜି ଗରଜି,
ଆଜି ଏକାଦଶୀ—
ଗତକାଲି ଦଶହରା ଯାଇଛି ।
ଯାଇଥିଲି ଯାଇଥିଲି
ଶରତର ଦ୍ୱାରେ,
କଦଳୀ ବୃକ୍ଷର ପୀତ ପତ୍ରାନ୍ତରାଳେ
ହସୁଥିଲା ଜଳବିନ୍ଦୁ;
କମନୀୟେ ଝୁଲି—
ଶୁଭ୍ର ସ୍ଫଟିକ ପରେ ବସିଥିଲେ ହଂସଯୂଥ,
ଯାଇଥିଲି, ସମ୍ବାଦ ଦେଇ ମୁଁ ଯାଇଥିଲି ।

କିନ୍ତୁ ବଂଧୁ ! ଆଘାତରେ ପଡ଼ି
ପାରିନାହିଁ ଦେଇ ତବ ରଚିତ କିତାବ,
ଅଛି ତାହା ନଳଟିଏ
ହୃଦୟଙ୍ଗମ ହେବ ଏବେ ବୋଧହୁଏ,
ମୋର ଅସୁବିଧାର ପରିମାଣ;
କ୍ଷମ, କ୍ଷମ
ବଂଧୁବର ହେ କ୍ଷମ ।

କୁମାର ପୂର୍ଣ୍ଣିମା ପାଖେଇ ଆସୁଛି,
ଶୁଭ୍ର ନୀଳ ନଭ—
ବର୍ଦ୍ଧିତ ଚନ୍ଦ୍ରେ ସ୍ନେହେ କାଖେଇଛି ।

ଆଘାତତଃ

'ଏନା କାର୍ଣ୍ଣିନା' ଅନୁବାଦରେ ମୁଁ ପଢ଼ୁଛ;
'ଦୁର୍ବାଦଳ' ପ୍ରକାଶ ପାଇଛ ।
ବ୍ୟର୍ଥ କଲଣି ତବ ଅମୂଲ୍ୟ ସମୟ,
ଲ୍‌ଗେ ମୋତେ ଭୟ;
ସ୍ନେହର ଶୁଭେଚ୍ଛା ଜଣାଇ
ନେଲ ଆଜ ବଂଧୁ ହେ ବଦାୟ ।

ମଧ୍ୟାହ୍ନ—୧୧
୮-୧୦-୫୪

---

# ବର୍ଷା ବିରହୀ

ଆସଇ ଧୀରେ ବରଷା ରାଜରାଣୀ,
ହଲାଇ ନୀଳ ଚୂର୍ଣ୍ଣ ଗୁରୁ ବେଣୀ,
ସୁଦୂରେ ଚଳେ ଅଚଳ ଚୂଳେ ଚୂଳେ,
ପରଶ ଦେଇ ଚଟୁଳ ଗାଲେଗାଲେ,
ପୀବର ଶ୍ରୋଣୀ ଜଘନ ଗୁରୁଭାରେ,
ଗଜଗାମିନୀ କଳନା କେତେ କରେ,
ଗଗନ ପଟେ ଧବଳ ବକ ଦଳ,
ଆସିତ ଶ୍ୟାମା ଧରି ବରଣ ମାଳ,
ନବୋଢ଼ା ଅନୁରାଗେ,
ଦରଘ-କନ୍ଧ ବକ୍ଷେ ବ୍ୟଥା ଜାଗେ ।

ଚିକୁରେ ଜାକ ରୁଚିର ନୀପ କଳି,
ଶ୍ରବଣେ ଯୂଥୀ ଝୁଲଏ ପ୍ରୀତି ଭଳି,
ମାଳତୀ ମାଳା ଗଳାଇ ଗଳ ଦେଶେ,
କୁଂଦ ଫୁଲ ଦଂତ ଦରହାସେ,
ବଲ୍ଲୀ କୋଳେ ଝିଲ୍ଲୀ ଡାକେ ଝିଇଁ,
ନୂପୁର ଧୀରେ ବାଜେ କି ଛାଇଁଛାଇଁ,
ଅଯୂନ ଧାରେ ଇନ୍ଦ୍ରଗୋପ ଧାର,
ଚରଣେ କବା ଅଳତା ପାଣି ଗାର,
ତାହାର ଶୋଭା ପ୍ରୀତି,
କବର ବୁକେ ଖେଳାଏ ଗତ ସ୍ମୃତି ।

ନମ୍ର ଗନ୍ଧ କମ୍ର ଫୁଲ୍ଲ ଘଟରେ,
ଚପଳା ଗୁରୁ ଚାହାଁଣୀ ଲଜ ଭଟରେ,
ଇନ୍ଦ୍ରଧନୁ ଅଧର ଗଉରବ,
ସାନ୍ଦ୍ର ଘନ ମନ୍ଦ୍ରଭାଷା ନଭ,
ମୟୂର ଗଳେ ମହ୍ଲାର ରାଗ ଗାଇ,
ବଜ୍ରନାଦେ ମାଦଳ ବାଇ ବାଇ,
ଚିବୁକ ତଳେ ଫୁଟାଇ ଚଂପା ହାସ,
ଚାତକ ଆଶା ଛଳରେ ରଚେ ରାସ,
ଗାଏ ମୁଁ ଶେଷଗୀତି,
ବନ୍ଧୁ ଦେଖ ବିଦାରି ମୋର ଛାତି ।

# ଲୋହିତ-ଗୁଂଠନ

ଶଇଳ କୋଳେ ବିମଳ ନିର୍ଝରଣୀ,
କଟୀତଟେ ବା କିଂକିଣି କିଣିକିଣି,
କିଅବା ଉର ଯୁଗଳ ସୁଶୋଭିତ,
ମୁକ୍ତାହାର ଲଳିତ ଦୋଳାୟିତ;
ପୀୟୂଷ ଢାଳେ ବ୍ରତତି ଫୁଲେ ଫୁଲେ,
ଝିନନ୍ ଝିନ ନୂପୁର୍ ବାଜେ ଗେଲେ,
ମଧୁର ମୃଦୁ କଅଁଳ ପରଶନେ,
ଜଗତ ଚିତ୍ତ ନାଚଇ ଛନ ଛନେ,
କାଂଦେ କେଉଁ ହିଆ,
ଅଜଣା ଦେଶେ ଯିବାରୁ ପ୍ରାଣପ୍ରିୟା ।

ବେଦନା ଭିତ୍ରେ ବଦନ ଆସେ ନଇଁ,
ମଉଳି ଯାଏ ମାନସ ସୁନା କଇଁ,
ଅଧର ତଳେ ହାସଟି ଯାଏ ଜଳି,
ଝାଉଁଳି ପଡ଼େ ବୁକୁର ପ୍ରେମ କଳି,
କ୍ଳାଂତ ଦେହେ ବିରହ ବୋଝ ବୋହି,
ଶୀର୍ଣ୍ଣ ମୋର ଅଂଠା ପଡ଼େ ନଇଁ,
ଜୀବନ-ଛବି ପାଷାଣ-ପଟା-ତଟେ,
ଅଭାଗା ମୋର ପୋଡ଼ାକପାଳ ଜୁଟେ,
ରକ୍ତ ଯାଏ ବୋହି,
ବିଶ୍ୱ ମୁଖେ ମୋର ଏ ବ୍ୟଥା ଗାଇ ।

ବିରସ ମନେ ଚଲଇ ମରୁପଥେ,
କଂପେ ତନୁ ମରମ ଝଡ଼ ଘାତେ,
ଝଂଜା ଆସି ଝାଂପେ ନତ ଶିର,
ବତାସ କରେ ଦଂତେ ଘୁରଣାର,
ଡମରୁ ସମ ଶୁଭଇ ଘଡ଼ଘଡ଼ି,
ଶୀର୍ଣ୍ଣ ଦେହ ବିଜୁଳି ଦିଏ ଚୋଡ଼ି,
ପ୍ରିୟା ତ ନାହିଁ କରିବ ଲୁହ ଦାନ,
ଜୀବନ ମୋର ହୋଇଚି ଶମଶାନ,
ବର୍ଷାଜଳ ଧାରେ,
ଅସ୍ଥି ଆଜ ଲିଭିଯିବ କି ଖରେ ?

ଅପରାହ୍ନ—୪
୩-୭-୪୮

---

## ଅନ୍ଧ କବିର ବିଳାପ

ପ୍ରଦୋଷର ଫାଟଲ କିରଣ
ସିନ୍ଧୁବକ୍ଷେ ଗଲା ଅପସରି,
ଆହେ ମୋର ମୋହମୁଗ୍ଧ କବି
ପକ୍ଷୀରବ ଶୁଣି କର୍ଣ୍ଣ ଭରି ।
ଦୃଷ୍ଟିପଥେ ମେଲିଦିଅ ଆଜି
ଜୀବନର ଶୁଭ୍ର ଆସ୍ତରଣ,
ଝଡ଼ିଯାଉ ପୃଷ୍ଠୁ ଦୈନ୍ୟଭାର,
ସ୍ଫୁଟ ହେଉ ତବ ଉନ୍ମୋଚନ ।

## ଲୋହିତ ଗୁଂଠନ

ଅଙ୍ଗ ଘରେ କଂପିଉଠେ ଆଜି
ଝିଟିକାର ଅନବାର ଡାକ,
ଆହେ କବ ଅନୁଭବ ପାଇଁ
ଏସବୁକୁ ବୁକ ମଧ୍ୟେ ଜାକ ।
ନଭପ୍ରାନ୍ତୁ ଭାସିଆସେ ବାତ
ବିଶ୍ୱୋଚ୍ଛ୍ୱାସ ତନୁ ଚଉପାଶେ,
କହଇ ସେ ବିଳୟୁ ବିଳୟୁ
ଆଖି ବୁଜେ ଗଭୀର ହତାଶେ;

କି ଗୀତଟି ବିରଚିବି ବୋଲି
ସାଇତି ଯା ଥିଲି ହୃଦପଟେ,
ଅଧରେ ତ ନ ଫୁଟିଲା ଭାଷା
ଅଠା ଅଠା ହେଲା କଂଠତଟେ ।
ଗୁହୁଁ ଗୁହୁଁ ସନ୍ଧ୍ୟା ଗଲା ଲୁଚି
ଦିବସର ଦୂର ଚକ୍ରବାଳେ,
ଗିରିତଟୁ ଆସିଲା ବାରତା
ଶ୍ରାନ୍ତ କ୍ଳାନ୍ତ କୋକିଳର ଗଳେ ।

ଝିଂକାରିଆ ତରୁପତ୍ର ହୋତ୍ରେ
ନୀରବତ ହେଲା ପକ୍ଷୀରବ,
ଦେବାଳୟୁ ଆଳତୀର ଧାରେ
ଚହଟିଲା କର୍ପୂର ସୌରଭ ।

## ଲୋହିତ ଗୁଂଠନ

କେହି ଗଲେ ଧାପ ଧରି ହାତେ
କାହା ମୁଖେ ସାଂଧ୍ୟ ଶଂଖଧ୍ୱନି,
କାହା ହାତେ କୋଦାଳ ଓ କଂକ
କାହା ସ୍କନ୍ଧେ ଶୋଭେ ହଳ ପୁଣି ।

କିଂତୁ କବି ସଂସାର ସେପାରେ
ଖୋଜିବସେ ତୃପ୍ତିର ସୀମାନ୍ତ,
ଶିର ଡେଇଁ ଚଳେ କ୍ଳାନ୍ତ ପିକ
ଧୀରେ ଗାଇ ପ୍ରଦୋଷ ସଂଗୀତ ।
'ଦିବସ ତ ହେଲଣି ବିବଶ
ଫେରି ଆସେ ପାନ୍ଥ ଏବେ ଗେହେ,
ସ୍ନେହାତୁରେ ଗୃହଁଥିବେ ପତ୍ନୀ
ଦେହଲୀରେ ମଥା ଦେଇ ସ୍ନେହେ— ।'

କର୍ଣ୍ଣ ପାଶେ ଗୃଳ ମନ୍ଦ୍ର ପକ୍ଷ
ବିହଗିଣୀ ଧୀରେ କହେ କଥା—
'ପୁଣି କେତେ ଦୂର ଅଛି ବାକି
ଉଡ଼ି ଉଡ଼ି ଡେଣା ଲାଗେ ବଥା ।'
ମୁଗ୍ଧ କବି ଉଠଇ ଚିତ୍କାରି—
'ଘେର ଘେର ଘେରାଇଛି ମନ—'
ନିମିଷେକେ ପୁଣି ଭାବେ ସେହୁ
'ଜୀବନ ତ ଖୋଜଇ ଜୀବନ ।'

## ଲୋହିତ ଗୁଂଠନ

ମନେ ହୁଏ ନେବ ମେଲି ଥରେ
ଦେଖିବ ସେ ଅଭାଗା ବିହଗୀ,
ଅଶ୍ରୁ ତାର ଫିଟାଏନା ପତା
ଗୃଳିଯାଏ ତାର ସମଭୋଗୀ ।
ମାଗିବ ସେ ଥରେ ତାର ସ୍ନେହ
ଜାବୁଡ଼ି ସେ ଆଣିବ ତା' ବ୍ୟଥା,
ହାୟ ସେ ତ ବୃଳିଯାଏ କାହିଁ
ରଖି ତାର ହୃଦେ ଆକୁଳତା ।

ଶୀର୍ଣ୍ଣ ଶ୍ଳଥ ଅଂଗୁଳିକୁ ଆଣେ
ଆଖିପତା ଉପରେ ସାଉଁଳି,
କବି ମୋର ଖୋଜଇ ଦରଶ୍ରି
ଜୀବନର ବେହୁଲ ସଖୀଳି ।
ହଠାତ୍ ତାର ମୃଦୁଳ ପରଶେ
ତଂତ୍ରୀ କଣ୍ଠେ ଧ୍ୱନି ମର୍ମରେ,
ସମାଦରେ ଆଣଇ ସେ ଟାଣି
ବ୍ୟାକୁଳିତ ଭଗ୍ନ ଉରୁ ପରେ ।

ତାରଟି ତ ଲାଗେ ଓଦା ଓଦା
ଯାଇଅଛି ପାଣିରେ ବତୁରି,
କିଂତୁ ମନେ ଲଭେ ଆଶ୍ୱାସନା
ଅଜ୍ଞାତର ଶତସ୍ମୃତି ସ୍ଫୁରି ।

ଲେଲ୍ୱିତ ଗୁଂଠନ

ଏଇ ତା'ର ଦେଇଥିଲା ପ୍ରାଣେ
ନିଃସ୍ୱର୍ଗର ସ୍ୱର୍ଗ ଉପାଦାନ,
ନିରାଶାର ପ୍ରାଣେ ଭରିଥିଲା
ଅସୀମର ଅତୃପ୍ତ ସାଧନ ।

ତାଠରେ କିଂପା ଆଜ ଅନାଦରେ
ଦେବ ଫିଙ୍ଗି ନଷ୍ଟ-ନୀଡ଼-ମନ,
ମାନସର ଅନାଦୃତ କୁଞ୍ଜେ
ଥାଉ ପଡ଼ି ନୀରବେ ଏସନ ।
ଏ ଜନମେ ନହେଲା ତ କିଛି
ଅସମ୍ପୂର୍ଣ୍ଣେ ସବୁ ଗଲା ରହି,
କଳାକାର ସୃଜନ-ବୃଂତରେ
ଫୁଟେ ଫୁଲ ଆଗାମୀର ପାଇଁ ।

## ଦୀପଗଂଧ

ଜଳଉଠେ ତନୁ ଧୂପକ ସ୍ତରେ,
ବେଦନା-ମୟୂଖ ତୀବ୍ର ଝଡରେ,
ନାହିଁ ମୋ ସାଥୀ,—
ସମାଧିର ତଳେ ହୋଇଛି ମାଟି ।

ଯେବେ ମୁଁ ଯତନ କରଇ ନିତି,
ଭୁଲିବା ପାଇଁ ତା' ମଧୁର ପ୍ରୀତି ।
ସ୍ନିଗ୍ଧ ସ୍ମୃତି,—
ଜୁଈର ସମ ସେ ଆସଇ ମାତି ।

ବନ୍ୟା ଛୁଟିଛି ପୀରତି ପଥେ,
ବତାସୀ ନୀରବ ପ୍ରଦୀପ ହାତେ,
ଚାଲଇ କାହିଁ,
ମଉନ କଥାଟି ମଉନେ କହି ।

ମଉନ ଗୀତଟି ଗାଇ ମୁଁ ଗଲେ,
ସମାଧିର ତଳେ ପ୍ରଦୀପ ଜାଳେ;
ଉଠଇ ଜଳି—
ଅଂତରେ ମୋର ଆଲୋକ ଭରି ।

ବିରହ କୁସୁମ ବେଦନା ଭରେ,
ଗୁଂଥେ ନୟନ ଅଶ୍ରୁ-ଧାରେ,
ଝରି ସେ ପଡ଼େ,
ମିଳନ ମାଳାଟି ସମାଧି ପରେ ।

ସ୍ନିଗ୍ଧ ସମୀର ଆସଇ ଧୀରେ,
ପରଶିଯାଏ ସେ ସମାଧି ପରେ,
ମାଳାଟି ଥରେ—
ହୃଦୟୁ ଦିଏ ଗୋ ବାସ ତା' ଭରି ।

ଝଶ୍ୱେ ଆଜ ମୁଁ ଭ୍ରାଂତ ଯୁବା,
ସମାଧିର ତଳେ କ୍ଲାଂତେ ଉଭା,
ପାଏନା ପଥ—
ଚଉଦିଗ - ଘନ - ଅଂଧାରିତ ।

ଅଂଧାର ଗେହେ କୋପତ କାହିଁ,
ଝଳପି ଉଠଇ ସୁଦୂରେ ଥାଇ,
କଂଠ ତାର—
ହଜଯାଏ ଆସି କଂଠେ ମୋର ।

ମଉନେ ଚକ୍ଷୁ ପାତି ମୁଁ ଦେଖେ,
ସମାଧି ତଳର ପ୍ରଦୀପ ଶିଖେ,
ଜଳଇ ସେଇ—
ଏ ମୋର ପରାଣ ବେଦନା ନେଇ ।

ଧୀରେ ଧୀରେ ଆସେ ତଇଲ ସରି,
କ୍ଷୁଦ୍ର ଶିଖାଟି ଆଲୋକ ଧରି,
ଆସଇ କମି—
ବର୍ତ୍ତିକା ଧାରେ କ୍ଷାର ସେ ଜମି ।

## ଲେମ୍ବିତ ଗୁଂଠନ

ଥମି ଥମି ଆସେ ଶିଖାଟି ସେ ଯେ,
ଏ ମୋର ଚକ୍ଷୁ ହଠାଶେ ବୁଜେ,
ଯାଏ ସେ ଲଭି,
ହୃଦୟେ ଆସେ ତା' ଗଂଧ ଦ୍ରବି ।

ଆସେ ମୋ ଗଂଡ ଅବଶେ ଛୁଇଁ,
ସମାଧିର ବୁକେ ଅଳସେ ନଇଁ,
ନିଶୀଥ ପକ୍ଷୀ—
ନଭସ୍ ତଳେ
ଗୁଳଯାଏ ଆହା—
ଆତୁର-କଂଠ-ଗୀତିକା ରଖି ।